'ଦୁଇ ବନ୍ଧୁ ପ୍ରବେଶିଲେ ଏକ ମଦ୍ୟଶାଳା,
ଜଣକୁ ଦିଶେ ପଙ୍କିଳ, ଅନ୍ୟଟିକୁ ତାରା ।'

ତେଣୁ କିଶୋରାବସ୍ଥାରେ ମଙ୍ଗଳ ଦର୍ଶନ ଏବଂ ନୈରାଶ୍ୟ ଦର୍ଶନ - ଉଭୟ ସମ୍ଭବ । ଏହି କାରଣରୁ ବୟସ୍କବ୍ୟକ୍ତିମାନେ କୈଶୋରର ସ୍ମୃତିଚାରଣ କଲାବେଳେ କିଏ ଆନନ୍ଦରେ କୁରୁଳିଉଠେ ତ ଆଉ କାହାଠାରେ ପ୍ରକାଶ ପାଏ ପଶ୍ଚାତ୍ତାପର ଦୀର୍ଘଶ୍ୱାସ । କାରଣ ଜୀବନର ମହାର୍ଘତମ ଏହି କିଶୋରାବସ୍ଥାର ସଫଳତା କିମ୍ବା ବିଫଳତାର ପଦଚିହ୍ନ ବୟସ୍କାବସ୍ଥା ବହନ କରିବାକୁ ବାଧ୍ୟ ।

# କନ୍ୟାଶିଶୁ

**ଡକ୍ଟର ପ୍ରିୟତମା ଦେଓ**

*ମିଳିତ ଜାତିସଂଘର ଗୋଟିଏ ସଂସ୍ଥା ୟୁନିସେଫ୍ । ତାହାରି ଏକ ରିପୋର୍ଟ ଅନୁସାରେ ଭାରତର ସ୍ୱାସ୍ଥ୍ୟସେବା ଅତି କଦର୍ଯ୍ୟ ସ୍ଥିତିରେ ରହିଛି । ସବୁଠାରୁ ବଞ୍ଚିତ ଅବସ୍ଥାରେ ଅଛନ୍ତି ଭାରତର ମହିଳା ଓ ଶିଶୁ । ପୁଣି ଅନ୍ୟାନ୍ୟ ବିକାଶଶୀଳ ଦେଶ ତୁଳନାରେ ଭାରତରେ ଶିଶୁକନ୍ୟାମାନଙ୍କ ପ୍ରତି ଅନାଦାର ଭାବ ଯଥେଷ୍ଟ ଅଧିକ । ଏ କ୍ଷେତ୍ରରେ ଜାତି, ବର୍ଣ୍ଣ, ଧର୍ମ, ନିର୍ବିଶେଷରେ ଧନୀ ଦରିଦ୍ର, ଶିକ୍ଷିତ ଅଶିକ୍ଷିତ ସମସ୍ତେ ମିଶି ଏକାକାର । ସାଧାରଣ ଜୀବନରେ ଏହା ଏତେ ଓତପ୍ରୋତ ଭାବରେ ଜଡ଼ିତ ଯେ ଆମେ ଦେଖି ମଧ୍ୟ ଦେଖିପାରୁନା, ଶୁଣି ମଧ୍ୟ ନ ଶୁଣିବାର ଛଳନା କରୁ ।*

ରେଜା ଗୁରୁବାରୀର ଝିଅ ସୁକୁମା କଥା ନିଆଯାଉ । ତାକୁ ମାତ୍ର ଚାରିବର୍ଷ । ମା' କାମ କଲାବେଳେ ତା'ର ଦାୟିତ୍ୱ ହେଲା ଦଶମାସର ଭାଇଟିକୁ ଖେଳାଇବ, ଖୋଇଦେବ ଓ ଶୁଆଇ ପକାଇବ । ତା'ରି ଭିତରେ ଯଦି ପିଲାଟି କାନ୍ଦେ, ତେବେ ସୁକୁମା ପିଠିରେ ବସିଯାଏ ଦି' ଚାରି ବିଧା । ଖାଲି ସୁକୁମା ନୁହେଁ, ଆଦିବାସୀ ଝିଅ ହୀରାର ଅବସ୍ଥା ପ୍ରାୟ ଏକା ଭଳି । ସାତ ବର୍ଷର ପିଲାଟା ବଣକୁ ଯିବ ସକାଳୁ ମା' ବା'ଙ୍କ ସାଙ୍ଗରେ । ବଣରେ କାଠ ଗୋଟେଇବ, ପତର ତୋଳିବ, କନ୍ଦା ଖୋଳିବ ଦିନ ସାରା । ସଞ୍ଜବେଳକୁ ନିଜ ଓଜନରୁ ଅଧିକ ଓଜନର କାଠପତର ଗୋଛା ମୁଣ୍ଡେଇ ଘରକୁ ଫେରିବ । ଅଖିଆ ଅପିଆ ପୁଣି ବାହାରିଯିବ ପାଣି ଆଣିବାକୁ କୋଶେଦୂରର ଚୁଆକୁ । ମା' ରାନ୍ଧିଥିବ ଭାତ । ତା'ର ଦଶବର୍ଷର ଭାଇ, ଦିନସାରା ସାଇ ଛୁଆଙ୍କ ସାଙ୍ଗରେ ଖେଳୁଥିବ, ବୁଲୁଥିବ । ସନ୍ଧ୍ୟାରେ ଦୁହେଁ ଖାଇବସିଲେ ମା' ପୁଅକୁ ଦେବ ଅଧିକ ଭାତ, ଅଧିକ ତିଅଣ । ପୁତ୍ ନରକରୁ ଉଦ୍ଧାର କରିବ ପୁଅ, ତେଣୁ ମା' ବାପାଙ୍କର ଅଧିକ ଆଦର ଯତ୍ନ ପୁଅ ଭାଗରେ ! ଗରିବ ଚାଷୀଟିର ବି ଇଚ୍ଛା ତା' ପୁଅ ହଳ ନ କରି ପାଠ ପଢ଼ିବ, ହାକିମ ହେବ । ହେଲେ ଝିଅ ସ୍କୁଲ୍ ଯାଇ କରିବ କ'ଣ ? ଅଭାବର ସଂସାରରେ ସମସ୍ତଙ୍କୁ ପାଠ ପଢ଼ାଇବା ବି ସମ୍ଭବ ନୁହେଁ । ତା' ଛଡ଼ା ଝିଅ ଜନମ ତ ପରଘରକୁ । ତେଣୁ ଝିଅଟି ମା'କୁ ଘର କାମରେ ସାହାଯ୍ୟ କରିବ, ବା' ପାଖକୁ ତୁଡ଼ା ପାଣି ଧରି ବିଲକୁ ଯିବ । ଖାଲି ଯେ ଦରିଦ୍ର ଚାଷୀ ବା



ରିକ୍ସାବାଲାର ଝିଅ ପାତର ଅନ୍ତରର ଶିକାର ହୁଏ, ତା' ନୁହେଁ । ବାପା ହୁଏତ ଇଞ୍ଜିନିୟର୍, ମା' ବି ଉଚ୍ଚଶିକ୍ଷିତା, ହୁଏତ ଅଧ୍ୟାପିକା । ସେମାନଙ୍କ ଘରେ ବି ପୁଅ ଓ ଝିଅଙ୍କ ପ୍ରତି ଆଚରଣରେ ଅନେକ ପ୍ରଭେଦ । ପୁଅ ସ୍କୁଲ୍‌ରୁ ସିଧା ଖେଳପଡ଼ିଆ, ଘରକୁ ଫେରୁ ଫେରୁ ସନ୍ଧ୍ୟାବତି ଜଳି ସାରିଥିବ । ହେଲେ ଝିଅପାଇଁ ନିୟମ କଡ଼ା । ସେ ସ୍କୁଲ୍‌ରୁ ଫେରି ସିଧା ଘରକୁ ଆସିବ, କବାଟ କିଳି ଘର ଭିତରେ ଥିବ ମା' ଆସିଲା ଯାଏ । କେବଳ ସେତିକି ନୁହେଁ, ଜୋର୍‌ରେ ହସିଲେ ମା' ଆକଟିବେ, ଜୋର୍‌ରେ କଥା କହିଲେ ବାପା ରାଗିବେ, ଯୁକ୍ତି କରିବାର ପ୍ରଶ୍ନ ତ ଉଠୁ ନାହିଁ । ଏସବୁ ଭିତରେ ଝିଅଟିର ମନ ଭରିଯାଏ ହୀନମନ୍ୟତାରେ । କେତେକଙ୍କ ଘରେ ପୁଅ ଭଳି ଝିଅର ଚିକିତ୍ସା ମଧ୍ୟ କରାଯାଏ ନାହିଁ ।

କେବଳ ମାଡ଼, ଗାଳି, ହତାଦର ଭିତରେ ସୀମିତ ରହେନି ଶିଶୁକନ୍ୟାଟିର ଦୁର୍ଦ୍ଦଶା । ପାଟିରୁ ଦରୋଟି କଥା ଶେଷ ହେବା ପୂର୍ବରୁ ବେଳେ ବେଳେ ବିକାରଗ୍ରସ୍ତ ପୁରୁଷର ଲୋଲୁପ ଦୃଷ୍ଟି ପଡ଼େ ତା' ଉପରେ । କେତେବେଳେ ଧର୍ଷଣ ପରେ ତାକୁ ମାରି ପକାଇ ଦିଆଯାଏ କେଉଁ କିଆବୁଦା ମୂଳେ କି ନଈ ପଠାରେ । ଆଉ କେତେବେଳେ ଧର୍ଷିତା କିଶୋରୀଟିକୁ ବିକ୍ରି କରିଦିଆଯାଏ କେଉଁ ବିବି ଅମ୍ମାର କୋଠାରେ, ଦେହ ବ୍ୟବସାୟପାଇଁ । ସଂପୃକ୍ତ ପୁରୁଷଟି ସମାଜର ମଙ୍ଗ ଧରି ବସେ । ତା'ପାଇଁ କୌଣସି ବାଡ଼ ବତା ନାହିଁ । ଘଟଣାଟି ଆହୁରି ଦୁଃଖଦ ଓ ଲଜ୍ଜାକର ହୋଇପଡ଼େ, ଯେତେବେଳେ ଝିଅଟି ନିଜ ପରିବାର ଭିତରେ ବି ସୁରକ୍ଷିତ ରହିପାରେ ନାହିଁ ।

ଅନେକ ବିଶ୍ୱାସ କରନ୍ତି - ‘‘ମୂଳୁ ମାରିଲେ ଯିବ ସରି.... ’’ ରେ । ଜନ୍ମ ପୂର୍ବରୁ ବା ଜନ୍ମ ହେଉ ହେଉ ହତ୍ୟା କରନ୍ତି ଶିଶୁକନ୍ୟାଟିକୁ । କନ୍ୟାଭ୍ରୁଣକୁ ହତ୍ୟା କରିବା ଘଟଣା ଆମ ଦେଶରେ ଅତି ସାଧାରଣ । ଅଧିକାଂଶ ରାଜ୍ୟରୁ ଏହି ଖବର ପ୍ରାୟ ନିୟମିତ ଭାବରେ ମିଳିଥାଏ । ଚିକିତ୍ସା ଜଗତରେ ଅଲଟ୍ରାସାଉଣ୍ଡର ପ୍ରବେଶ ପରେ ଝିଅମାନଙ୍କ ଦୁଃଖ ଆହୁରି ବଢ଼ିଯାଇଛି । କାରଣ ଏହାଦ୍ୱାରା ଗର୍ଭସ୍ଥ ଭ୍ରୁଣ ପୁଅ କି ଝିଅ ଜଣାପଡ଼େ । ଫଳରେ ପୁତ୍ରବତୀ ହେବାର ସୌଭାଗ୍ୟକୁ ଚାତକ ଭଳି ପ୍ରତୀକ୍ଷା କରିଥିବା ମାଆଟି ଗର୍ଭପାତ କରାଏ, ହୁଏତ ସ୍ୱଇଚ୍ଛାରେ ବା ଆତ୍ମୀୟମାନଙ୍କ ଧମକପୂର୍ଣ୍ଣ ପ୍ରରୋଚନାରେ । ଏ ପ୍ରକାର ମନୋବୃତ୍ତି ଥିବା ପରିବାରରେ ଯଦି କନ୍ୟାଶିଶୁଟି ଭୂମିଷ୍ଠ ହୁଏ, ତେବେ ତା’ର ଅବସ୍ଥା କ’ଣ ହେବ ତାହା ସହଜରେ ଅନୁମେୟ । ସଂସାରର ଆଲୋକ ଅନ୍ଧାର ସହିତ ପରିଚିତ ହେବା ପୂର୍ବରୁ ଶେଷ ନିଃଶ୍ୱାସ ନେଇଥିବ ସେ । ତଣ୍ଟିଚିପି ହେଉ ବା ବିଷ ପିଆଇ ପାଣି ଭିତରେ ବୁଡ଼ାଇ ରଖି ବା ମୋଟେ ଖାଇବାକୁ ନ ଦେଇ ମାରି ଦିଆଯାଏ କୋମଳ ନିର୍ବୋଧ ଶିଶୁଟିକୁ । ପୁଣି କେତେବେଳେ ଓଦା ଲୁଗାରେ ଶିଶୁକନ୍ୟାଟିକୁ ପୂରାଇ ଓଲଟ କରି ଟାଙ୍ଗି ଦିଆଯାଏ ଶ୍ୱାସରୁଦ୍ଧ ହୋଇ ମରିଯିବାପାଇଁ । ଏଇ ନିଷ୍ଠୁର ବର୍ବରୋଚିତ କାର୍ଯ୍ୟଟି କରିବାକୁ ମୃତ୍ୟୁଦୂତ ସାଜି ଆସନ୍ତି କେତେବେଳେ ଧାଈ ତ କେତେବେଳେ ସାଇପଡ଼ିଶାର କେହି । ବେଳେ ବେଳେ ନିଜେ ଗର୍ଭଧାରୀ ମା’ ଆଗେଇଆସେ ଯତ୍ନରେ ଗଢ଼ିଥିବା ଜିନିଷଟିକୁ ଭାଙ୍ଗି ଚୂରମାର୍ କରିଦେବାକୁ । ସେତେବେଳେ ସେ ଭୁଲିଯାଏ ଯେ ସେ ମଧ କନ୍ୟାଶିଶୁଟିଏ ହୋଇ ଆସିଥିଲା ଏ ସଂସାରକୁ ।

କନ୍ୟାଶିଶୁ ପ୍ରତି ପରିବାର ତଥା ସମାଜର ଅସୂୟା ଭାବ ବେଶି ଦିନର ନୁହେଁ । ଏହା ଆରମ୍ଭ ହୋଇଛି ମଧ ଯୁଗରେ । ତା’ ପୂର୍ବରୁ ନାରୀ ଅପାଙ୍‌କ୍ତେୟ ନ ଥିଲା । ତା’ର ଉତ୍ସର୍ଗୀକୃତ ଚିନ୍ତା ଚେତନାରେ ଗଢ଼ି ଉଠୁଥିଲା ଏକ ସୁସ୍ଥ ସୁନ୍ଦର ସମାଜ । ବୈଦିକ ଯୁଗରେ ନାରୀକୁ ‘ବ୍ରହ୍ମା’ ଆଖ୍ୟା ଦିଆଯାଇଥିଲା । ବିଶ୍ୱସ୍ରଷ୍ଟା ବ୍ରହ୍ମାଙ୍କର ସୃଷ୍ଟିକୁ ଆଗେଇ ନେବାର ଦାୟିତ୍ୱ ବହନ କରିଥିବାରୁ ନାରୀର ‘ବ୍ରହ୍ମା’ ନାମ ଯଥାର୍ଥ ପରି ମନେହୁଏ । ବୈଦିକ ଯୁଗର ଗାର୍ଗୀ, ମୈତ୍ରେୟୀ, ଲୋପାମୁଦ୍ରା ଆଦି ନାରୀମାନେ ପୁରୁଷମାନଙ୍କ ସହିତ ସମାନ ଅଧିକାର ଲାଭ କରିଥିଲେ । ପୁରାଣ ଯୁଗରେ ଦେବତାମାନେ ପରାସ୍ତ ହେଲେ ନାରୀ ଆବିର୍ଭୂତା ହେଉଥିଲା ଦୁର୍ଗା ରୂପରେ, ଶୁମ୍ଭ, ନିଶୁମ୍ଭ, ମହିଷାସୁରଙ୍କୁ ବଧ କରିବାପାଇଁ, ସୀତା ଭାବରେ, ରାବଣର ସ୍ୱର୍ଣ୍ଣଲଙ୍କାକୁ ଜାଳିପୋଡ଼ି ଛାରଖାର କରିଦେବାପାଇଁ ଏବଂ ଦ୍ରୌପଦୀ ରୂପରେ, ଅଧର୍ମୀ କୁରୁବଂଶକୁ ଧ୍ୱଂସ କରିବାପାଇଁ । ଏହା କେବଳ ଏତିକି ସୂଚାଉଛି ଯେ ଯେଉଁଠାରେ ନାରୀର ଅମର୍ଯ୍ୟାଦା ହୋଇଛି, ସେଠାରେ ସମାଜ ହୋଇଛି ଧ୍ୱଂସମୁଖୀ । ମନୁଙ୍କ ଭାଷାରେ -

‘‘ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ ।
ଯତ୍ରୈତାସ୍ତୁ ନ ପୂଜ୍ୟନ୍ତେ ସର୍ବସ୍ତତ୍ରା ଫଳାଃ କ୍ରିୟାଃ ।।’’

ଅର୍ଥାତ୍ ''ଯେଉଁଠାରେ ନାରୀ ପୂଜ୍ୟା, ଆଦରଣୀୟା ସେଠାରେ ଦେବତାମାନେ ବିଚରଣ କରନ୍ତି । ଯେଉଁଠାରେ ସେମାନେ ଉପେକ୍ଷିତା ବା ହତାଦରର ପାତ୍ରୀ, ସେଠାରେ ସମସ୍ତ କର୍ମ ନିଷ୍ଫଳ ହୁଏ ।'' ସେ ଯୁଗରେ ନାରୀର ଆସନ ଯଥେଷ୍ଟ ଉଚ୍ଚରେ ଥିବା ବିଷୟ ଏ ଶ୍ଳୋକଟିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ।

ମଧ୍ୟଯୁଗରେ ଭୂଲୁଣ୍ଠିତ ହେଲା ନୈତିକତାର ମାନଦଣ୍ଡ । ଅବକ୍ଷୟୀ ସ୍ଖଳିତ ସମାଜ ନାରୀକୁ ନିର୍ଯାତିତ କଲା ନାନା ଭାବରେ । ତା'ର ଅନ୍ତର୍ନିହିତ ସୌନ୍ଦର୍ଯ୍ୟକୁ ଭୁଲି କୋମଳ ଦୈହିକ ସୌନ୍ଦର୍ଯ୍ୟର ଉପାସକ ହେଲା ବିଳାସୀ ପୁରୁଷ, ଭୋଗ୍ୟ ବସ୍ତୁ ଭଳି କ୍ରୟ ବିକ୍ରୟ କଲା ନାରୀକୁ । ମାନସିକ ସ୍ତରରେ ନାରୀ ପୁରୁଷର ସମକକ୍ଷ ହୋଇଥିଲେ ବି ନାରୀର ଦୈହିକ ବଳ ପୁରୁଷର ବଳ ତୁଳନାରେ ଯଥେଷ୍ଟ କମ୍ । ଏହାର ସୁଯୋଗ ନେଇ ପୁରୁଷ ନାରୀକୁ କଲା ପଦାନତ । ଆଉ ପୁରୁଷର ଲୋଲୁପ ଦୃଷ୍ଟିରୁ ନିଜକୁ ବଞ୍ଚାଇବାପାଇଁ ନାରୀ ବାଛିନେଲା ସଂକୁଚିତ ତଥା ବିଡ଼ମ୍ବିତ ଜୀବନ । ପୁରୁଷ ପ୍ରଧାନ ସମାଜର ବଡ଼ପଣ୍ଡାମାନେ ଧର୍ମ, ପରମ୍ପରା ତଥା ସଂସ୍କୃତିର ମିଥ୍ୟା ଦ୍ୱାହି ଦେଇ ନାରୀକୁ କଲେ ପର୍ଦାନସିନ, ପ୍ରଚଳନ କଲେ ବାଲ୍ୟବିବାହ ଓ ସତୀଦାହ ଭଳି କ୍ରୁର କଠୋର ପ୍ରଥା । ଅନ୍ଧବିଶ୍ୱାସ, ଅଶିକ୍ଷା ଓ କୁସଂସ୍କାରଜନିତ ଅଜ୍ଞାନ ଅନ୍ଧକାର ଭିତରେ ସଢ଼ିଲା ନାରୀର ଜୀବନ । କନ୍ୟାଶିଶୁର ଜନ୍ମ, ଜୀବନ ତଥା ମରଣ ହେଲା ଅତ୍ୟନ୍ତ କରୁଣ ଓ ଦୟନୀୟ । ହୁଏତ ସେ ଥାଳିରେ ଶୋଇ ବିବାହ କଲା ତିନିମାସ ବୟସରେ । ଛଅ ମାସରେ ଗୁରୁଣ୍ଡିଲା ବେଳକୁ ହୁଏତ ସେ ହେଲାଣି ବିଧବା । ସତୀଦାହ ପ୍ରଥାର ରକ୍ଷକମାନେ ଯଦି ଦୟାପରବଶ ହୋଇ ସ୍ୱାମୀର ଚିତା ଉପରେ ତାକୁ ଶୁଆଇ ନ ଦିଅନ୍ତି, ତେବେ ମୃତ୍ୟୁ ଯାଏ ତାକୁ ବୋହିବାକୁ ପଡ଼ିବ ବୈଧବ୍ୟର ବୋଝ । ସାରା ବିଶ୍ୱରେ ଏଭଳି ବର୍ବର ନିଷ୍ଠୁରତାର ପଟାନ୍ତର ନାହିଁ ।

ଅଷ୍ଟାଦଶ ଶତାବ୍ଦୀବେଳକୁ ବାଲ୍ୟବିବାହ ଓ ସତୀଦାହ ପ୍ରଥା ଭୟଙ୍କର ରୂପ ଧାରଣ କରିଥାଏ । ସେତେବେଳେ ଦେଶର ଶାସନ ଡୋରି ଥାଏ ଇଂରେଜମାନଙ୍କ ହାତରେ । ସେମାନଙ୍କ ଶିକ୍ଷା ଓ ସଂସ୍କୃତିର ପ୍ରଭାବ ପଡ଼ିଲା ଭାରତୀୟ ରକ୍ଷଣଶୀଳ ସମାଜ ଉପରେ । ଏକ ନୂତନ ଚେତନାରେ ଉଦ୍‌ବୁଦ୍ଧ ହୋଇ ଯେଉଁ ମହାମନୀଷୀମାନେ ନାରୀମାନଙ୍କୁ ମାନବୀୟ ନ୍ୟାୟ ଦେବାପାଇଁ ସତତ ଚେଷ୍ଟିତ ଥିଲେ, ସେମାନଙ୍କ ମଧ୍ୟରୁ ରାଜା ରାମମୋହନ ରାୟ ଅନ୍ୟତମ । ତାଙ୍କର ଉଦ୍ୟମରେ ୧୮୨୯ ମସିହାରେ ସତୀଦାହ ପ୍ରଥା ଲୋପ ପାଇଲା । ପରବର୍ତ୍ତୀ ପର୍ଯ୍ୟାୟରେ ବାଲ୍ୟବିବାହ ବନ୍ଦ କରିବା ତଥା ବିଧବା ବିବାହ ପ୍ରଚଳନ କରିବା ଭଳି ବୈପ୍ଳବିକ ପଦକ୍ଷେପମାନ ନିଆଗଲା । ଏଥିରେ ନେତୃତ୍ୱ ନେଇଥିଲେ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ଓ ବିଶିଷ୍ଟ ବ୍ରହ୍ମବାଦୀ ସଂସ୍କାରକ କେଶବ ଚନ୍ଦ୍ର ସେନ୍ । ସେମାନଙ୍କ ପ୍ରଚେଷ୍ଟାରେ ୧୮୫୬ ମସିହାରେ ବିଧବା ପୁନର୍ବିବାହ ଆଇନ୍ ପ୍ରଚଳିତ ହେଲା । ବଞ୍ଚିବାର ଅର୍ଥ ଖୋଜି ପାଇଲେ ବାଲ୍ୟବିଧବାମାନେ ।

ଏହା ଭିତରେ ବିତିଯାଇଛି ପ୍ରାୟ ଦେଢ଼ଶହବର୍ଷ । କନ୍ୟାଶିଶୁର ସୁରକ୍ଷାପାଇଁ ଆହୁରି ଅନେକ ଆଇନ୍ କାନୁନ୍ ଗଢ଼ା ଗଲାଣି । ଏବେ ଅଠର ବର୍ଷରୁ କମ୍ ବୟସର ଝିଅମାନଙ୍କୁ ବିଭାଦେବା ଆଇନତଃ ଦୋଷାବହ । ସବୁ କ୍ଷେତ୍ରରେ ପୁଅ ସହିତ ଝିଅର ସମାନ ଅଧିକାର । ଏପରିକି ପୈତୃକ ସମ୍ପତ୍ତିରୁ ସମାନ ଅଂଶ ପାଇବାକୁ ହକ୍‌ଦାର ହୋଇଛନ୍ତି କନ୍ୟାସନ୍ତାନମାନେ । ଦାରିଦ୍ର୍ୟ ହିଁ ନାରୀଶିକ୍ଷାର ପ୍ରଧାନ ପ୍ରତିବନ୍ଧକ ବୋଲି ହୃଦୟଙ୍ଗମ କରି ସରକାର ପ୍ରଥମ ଶ୍ରେଣୀରୁ ଆରମ୍ଭ କରି ସ୍ନାତକୋତ୍ତର ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ରୀମାନଙ୍କର ଦରମା ଛାଡ଼ କରିଛନ୍ତି । ବୈଷୟିକ ଶିକ୍ଷା କ୍ଷେତ୍ରରେ ସେମାନଙ୍କପାଇଁ ଶତକଡ଼ା ତିରିଶ ଭାଗ ସ୍ଥାନ ସଂରକ୍ଷଣର ବ୍ୟବସ୍ଥା ବି କରିଛନ୍ତି । ସରକାରୀ ସ୍ତରର ଚିକିତ୍ସା ସୁଯୋଗ ନାରୀ ଓ ପୁରୁଷ ଉଭୟଙ୍କପାଇଁ ସମାନ ଭାବରେ ଉପଲବ୍ଧ । ଜନସଂଖ୍ୟା ନିୟନ୍ତ୍ରଣପାଇଁ ଗର୍ଭପାତ ଅନେକ କ୍ଷେତ୍ରରେ ଆଇନ୍ ଅନୁମୋଦିତ ହୋଇଥିଲେ ବି ଭ୍ରୂଣର ଲିଙ୍ଗ ନିରୂପଣ ନିଷିଦ୍ଧ ହୋଇଛି । ଧର୍ଷିତା କନ୍ୟାମାନଙ୍କ ଅର୍ଥନୈତିକ ସୁରକ୍ଷାପାଇଁ ପ୍ରଚଳିତ ହୋଇଛି 'ରାଜରାଜେଶ୍ୱରୀ ବୀମା' ଯୋଜନା । କନ୍ୟାଶିଶୁର ମାତାମାନଙ୍କୁ ଆର୍ଥିକ ଅନୁଦାନ ଦେବାର ବ୍ୟବସ୍ଥା ମଧ୍ୟ ହୋଇଛି ।

ଏଭଳି ଅନେକ ଆଇନ୍ କାନୁନ୍ ତିଆରି ହେଲା ପରେ ଓ ଅନେକ ଶୁଭଙ୍କରୀ ଯୋଜନାର ମୂଳଦୁଆ ପଡ଼ିଲା ପରେ ବି କନ୍ୟାଶିଶୁଟି ଯେଉଁ ତିମିରେକୁ ସେଇ ତିମିରେ । ନା ଏ ସବୁ ତାକୁ ଉଠାଇପାରିଛି ପୁରୁଷର ଭ୍ରୂକୁଞ୍ଚନର ଊର୍ଦ୍ଧ୍ୱକୁ ନା ପୋଛିପାରିଛି ତା' ମନରୁ ହୀନମନ୍ୟତାର ଛାପ । ଅଧିକାଂଶ ଶିଶୁକନ୍ୟାଙ୍କ ଜୀବନ କଟୁଛି ହୀନ ଅବାଞ୍ଛିତ ଭାବରେ । ଫୁଙ୍ଗୁଳା ଦେହ, ନୁଖୁରା ମୁଣ୍ଡ ଓ ଭୋକିଲାପେଟକୁ ନେଇ କଟୁଛି ଅନେକ ଦରିଦ୍ର ତଥା ନିମ୍ନ ମଧ୍ୟବିତ୍ତ ପରିବାରର କନ୍ୟାମାନଙ୍କ ଜୀବନ । ଅବିକଶିତ ତଥା ବିକାଶଶୀଳ ଦକ୍ଷିଣ ଏସୀୟରାଷ୍ଟ୍ର ନାୟକମାନଙ୍କ ସମ୍ମୁଖରେ କନ୍ୟାଶିଶୁ ଦଣ୍ଡାୟମାନ ହୋଇଛି ଏକ ଗୁରୁତର ସମସ୍ୟାରୂପରେ । ଏବେବି ସେ ଦଇନି କରୁଛି ନିଜର ସୁରକ୍ଷାପାଇଁ, ବଞ୍ଚିରହିବାର ସର୍ବନିମ୍ନ ଅଧିକାରପାଇଁ । କେବଳ କାଗଜ କଲମରେ ନୀତି ନିୟମ ନିର୍ଦ୍ଧାରଣ କଲେ ସେମାନଙ୍କର ଦୁର୍ଦ୍ଦଶା ମୋଚନ ହେବ ନାହିଁ । ଏଥିପାଇଁ ଲୋଡ଼ା ମାନବୀୟ ସଚେତନତା । ଦୁର୍ଗା, କାଳୀ, ମଙ୍ଗଳାଙ୍କୁ ପୂଜା କରି ଫେରିବା ବାଟରେ ଗୋଟିଏ ପାଞ୍ଚବର୍ଷର ଅବୋଧ ଶିଶୁକନ୍ୟାକୁ ଦେଖି ପୁରୁଷମନରେ ଯଦି ଯୌନଲାଳସା ଜାଗିଉଠେ, ତେବେ କନ୍ୟାସନ୍ତାନମାନଙ୍କୁ ରକ୍ଷା କରିବ କିଏ ? ବାପା, ମା' ପରିବାରଙ୍କ ଆଖି ସାମ୍ନାରେ ଅଥବା ଶହ ଶହ ଲୋକଙ୍କ ଉପସ୍ଥିତିରେ ବିଡ଼୍ ବଜାର ଉପରେ କିଶୋରୀ କନ୍ୟା ଯେପରି ଭାବରେ ନିର୍ଯାତିତା ହେଉଛି, ସେଥିରେ ସ୍ପଷ୍ଟ ଜାଣିହୁଏ ଯେ ନାରୀକୁ ସୁରକ୍ଷା ଦେବାପାଇଁ ଆଇନ୍‌ର ଚାବୁକ ସମ୍ପୂର୍ଣ୍ଣ ଅସମର୍ଥ । ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଉଦାରବାଦୀ ଚିନ୍ତାଧାରା ତଥା ଜନ ସଚେତନତା ହିଁ ମୁକ୍ତ କରିପାରେ କନ୍ୟାସନ୍ତାନମାନଙ୍କୁ ଅନ୍ୟାୟ ଅବିଚାରର ନାଗଫାଶରୁ ।

ଏହି ଲକ୍ଷ୍ୟ ନେଇ 'ଦକ୍ଷିଣ ଏସୀୟ ଆଞ୍ଚଳିକ ସହଯୋଗ ସଂସ୍ଥା ସାର୍କ' (SAARC, South Asian Association for Regional Cooperation) ତରଫରୁ ୧୯୯୦ ମସିହାଟିକୁ 'ଅନ୍ତର୍ଜାତୀୟ ଶିଶୁକନ୍ୟା ବର୍ଷ' ଭାବରେ ପାଳନ କରାଗଲା । ସରକାରୀ, ବେସରକାରୀ ତଥା ସ୍ୱେଚ୍ଛାସେବୀ ସଂଗଠନଗୁଡ଼ିକ ଏ କାର୍ଯ୍ୟକ୍ରମରେ ବେଶ୍ ଗଠନମୂଳକ ଭୂମିକା ଗ୍ରହଣ କଲେ । ଏହାଦ୍ୱାରା ଅହଙ୍କାରୀ ପୁରୁଷର ଦୃଷ୍ଟିକୋଣରେ ସାମାନ୍ୟ ପରିବର୍ତ୍ତନ ଘଟିଲା ଓ ନାରୀମାନେ ଲାଞ୍ଛିତ ସାମାଜିକ ବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରିବାର ସାହସ ପାଇଲେ । ଶିଶୁକନ୍ୟାର ଭାଗ୍ୟୋଦୟ ହେଲା । UNICEF ତରଫରୁ ଦକ୍ଷିଣଏସୀୟ ଶିଶୁକନ୍ୟାର ନୂତନ ସାଙ୍କେତିକ ନାମକରଣ ହେଲା 'ମୀନା' । ଏହି ସଂସ୍ଥାର ପୃଷ୍ଠପୋଷକତାରେ ୧୯୯୪ ମସିହା ସେପ୍ଟେମ୍ବରମାସକୁ 'ଶିଶୁକନ୍ୟା ମାସ' ଓ ସେଇ ମାସ ୨୪ ତାରିଖକୁ 'ମୀନା ଦିବସ' ଭାବରେ ପାଳନ କରାଗଲା । ଜନ ସଚେତନତାର ବହ୍ନିକୁ ପ୍ରଜ୍ୱଳିତ କରି ରଖିବାପାଇଁ 'ସାର୍କ' ତରଫରୁ ୧୯୯୧ରୁ ୨୦୦୦ ମସିହା ଯାଏ, ଏଇ ଦଶବର୍ଷକୁ 'ଶିଶୁକନ୍ୟାର ଦଶନ୍ଧି' ଭାବରେ ମଧ ପାଳନ କରାଯାଇଥିଲା ।

ଏସବୁ ସତ୍ତ୍ୱେ ଶିଶୁକନ୍ୟାମାନଙ୍କର ଦୟନୀୟ ଅବସ୍ଥାର ଆଶାନୁରୂପ ସାମୂହିକ ପରିବର୍ତ୍ତନ ଘଟି ନାହିଁ । ଶିକ୍ଷିତ ଧନୀ ତଥା ଉଚ୍ଚ ମଧବିତ୍ତ ଶ୍ରେଣୀର କନ୍ୟାସନ୍ତାନମାନଙ୍କର ଅବସ୍ଥାରେ ଯଥେଷ୍ଟ ଉନ୍ନତି ଘଟିଥିଲେ ବି ଅଶିକ୍ଷିତ, ଦରିଦ୍ର ପରିବାରର ସନ୍ତତିମାନେ ଭାଗ୍ୟ ଆଦରି ନିର୍ଯାତନାକୁ ମୁଣ୍ଡପୋତି ସହି ନେଉଛନ୍ତି । ଯେତେଦିନ ପର୍ଯ୍ୟନ୍ତ ଦାରିଦ୍ର୍ୟର କଷାଘାତ ତଥା ଅଶିକ୍ଷାରେ ସେମାନେ ବୁଡ଼ିରହିଥିବେ, ସେତେଦିନ ପର୍ଯ୍ୟନ୍ତ ସେମାନଙ୍କ ଅବସ୍ଥାରେ ପରିବର୍ତ୍ତନର ଆଶା କରିବା ବୃଥା । ସେଇଥିପାଇଁ ଗାନ୍ଧିଜୀ ସର୍ବୋଦୟ ସମାଜ ସ୍ଥାପନ କରିବାପାଇଁ ଯେଉଁ ରଚନାତ୍ମକ କାର୍ଯ୍ୟଗୁଡ଼ିକ ଦେଶବାସୀଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ, ତନ୍ମଧ୍ୟରୁ ନାରୀଶିକ୍ଷା ଥିଲା ଅନ୍ୟତମ । ଦେଶ ସ୍ୱାଧୀନ ହେବାର ୬୦ ବର୍ଷରୁ ଉର୍ଦ୍ଧ୍ୱ ହେଲାଣି । ଖୋଲିଲାଣି ଅନେକ ନିମ୍ନ ପ୍ରାଥମିକ ବିଦ୍ୟାଳୟ । ହେଲେ ଏ ପର୍ଯ୍ୟନ୍ତ ସାର୍ବଜନୀନ ପ୍ରାଥମିକ ଶିକ୍ଷା ସକାଶେ ଅନୁକୂଳ ପରିସ୍ଥିତି ଓ ଗଣଚେତନା ସୃଷ୍ଟି କରାଯାଇ ପାରି ନାହିଁ । କିନ୍ତୁ ଯେଉଁ ରାଜ୍ୟଗୁଡ଼ିକ ପ୍ରାଥମିକ ସ୍ତରରୁ ସର୍ବୋଚ୍ଚ ସ୍ତର ଯାଏ ନାରୀଶିକ୍ଷାକୁ ପ୍ରାଧାନ୍ୟ ଦେଇଛନ୍ତି, ସେଗୁଡ଼ିକରେ ସାମାଜିକ ପ୍ରଗତିର ହାର ଅନ୍ୟ ରାଜ୍ୟଗୁଡ଼ିକ ତୁଳନାରେ ଯଥେଷ୍ଟ ଅଧିକ ହୋଇଛି । ଉଦାହରଣସ୍ୱରୂପ ଶିକ୍ଷିତ ବାପା, ମା' ପରିବାର କଲ୍ୟାଣ ଯୋଜନାର ପୂର୍ଣ୍ଣ ସୁଯୋଗ ନେଇ ନିଜ ପରିବାରଟିକୁ ସୀମିତ ରଖିଛନ୍ତି । ଏହାଦ୍ୱାରା ଜନ୍ମହାର ହ୍ରାସ ପାଇବା ସଙ୍ଗେ ସଙ୍ଗେ ମା'ର ସ୍ୱାସ୍ଥ୍ୟରେ ଯଥେଷ୍ଟ ଉନ୍ନତି ଘଟିଛି । ପ୍ରକାରାନ୍ତରେ ଏହା ପରିବାରର ଆର୍ଥିକ ଅବସ୍ଥାକୁ ସ୍ୱଚ୍ଛଳ କରିଛି । କନ୍ୟାସନ୍ତାନ ଓ ପୁତ୍ରସନ୍ତାନ ଉଭୟଙ୍କୁ ସମଦୃଷ୍ଟିରେ ଦେଖିବାର ମନୋଭାବ ଜାତ କରିଛି । ସେମାନେ ହୃଦୟଙ୍ଗମ କରୁଛନ୍ତି ଯେ ଯେତେଦିନ ଯାଏ ସମାଜର ଅର୍ଦ୍ଧେକ ଅଂଶ ନାରୀ ଅପାଙ୍‌କ୍ତେୟ ହୋଇ ରହିବ, ସେତେଦିନ ଯାଏ ସୁସ୍ଥ ସମାଜ ଗଢ଼ି ଉଠିପାରିବ ନାହିଁ କି ସମାଜର

ସର୍ବାଙ୍ଗୀଣ ଉନ୍ନତି ହୋଇପାରିବ ନାହିଁ । ସୁଯୋଗ ପାଇଲେ ତାଙ୍କରି କନ୍ୟାସନ୍ତାନଟି ଡାକ୍ତର ଇଞ୍ଜିନିୟରଠାରୁ ଆରମ୍ଭ କରି ବିମାନଚାଳିକା ପର୍ଯ୍ୟନ୍ତ ହୋଇପାରେ, ପର୍ବତ ଆରୋହଣ କରିପାରେ, ଭଗିନୀ ନିବେଦିତା ଭଳି ସେ ମୁମୂର୍ଷୁଙ୍କ ସେବା ବି କରିପାରେ ପୁଣି ଯୁଦ୍ଧକ୍ଷେତ୍ରରେ ଦୁର୍ଗା ଭଳି ଅବତୀର୍ଣ୍ଣ ହୋଇପାରେ, ବାତ୍ସଲ୍ୟମୟୀ ମା' ଭାବରେ ସେ ଜନ୍ମ ଦେଇପାରେ ଗାନ୍ଧୀଙ୍କୁ, ଆଇନ୍‌ଷ୍ଟାଇନ୍‌ଙ୍କୁ, ଦୁଃସାହସୀ ହୋଇ ମହାଶୂନ୍ୟକୁ ଉଡ଼ିଯାଇପାରେ ଭାଲେଣ୍ଟିନା ତେରେସ୍କୋଭାଙ୍କ ଭଳି ।

କନ୍ୟାଶିଶୁମାନଙ୍କ ଭିତରେ ପୂରି ରହିଥିବା ଏହି ଅଜସ୍ର ସମ୍ଭାବନାଗୁଡ଼ିକ ଧୀରେ ଧୀରେ ଉନ୍ମୋଚିତ ହୋଇ ରକ୍ଷଣଶୀଳ ସମାଜର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣିବାରେ ଲାଗିଛି । ମନେ ହେଉଛି ଶିକ୍ଷାର ବହୁଳ ପ୍ରସାର ହେଲେ କନ୍ୟାସନ୍ତାନମାନଙ୍କର ବିଡ଼ମ୍ବିତ ଜୀବନର ଅବସାନ ଘଟିବାରେ ଅଧିକ ବିଳମ୍ବ ହେବ ନାହିଁ । ସେଦିନ ଗାନ୍ଧିଜୀଙ୍କ ବାସ୍ତବ ସ୍ୱାଧୀନତାର ସ୍ୱାଦ ଚାଖିବ ସମାଜ - ଝିଅଟିଏ ରାତ୍ରିର ବିଳମ୍ବିତ ପ୍ରହରରେ ବି ନିର୍ଭୟରେ ବିଚରଣ କରିପାରିବ ଧରାପୃଷ୍ଠରେ !

# ପୁତ୍ରର ପ୍ରଧାନଶିକ୍ଷକଙ୍କୁ ଆବ୍ରାହାମ୍ ଲିଙ୍କନ୍‌ଙ୍କ ପତ୍ର

**ଉପସ୍ଥାପନା - ଇଂ. ମୀରା ବିଶ୍ୱବନ୍ଧ୍ୟା**

*ଏହି ପତ୍ରଟିର ବିଷୟବସ୍ତୁ କାଳଜୟୀ । କାରଣ ପ୍ରତ୍ୟେକ ପିତାମାତାଙ୍କପାଇଁ ଏହାର ପ୍ରାସଙ୍ଗିକତାରେ ପ୍ରଶ୍ନବାଚୀ ନାହିଁ ।*

ପ୍ରତ୍ୟେକ ବ୍ୟକ୍ତିର ଅନ୍ତରରେ ତା'ର ସନ୍ତାନମାନଙ୍କ ପ୍ରତି ଥାଏ ଏକ ସ୍ନେହଶ୍ରଦ୍ଧାସିକ୍ତ ଦୁର୍ବଳତା । ପ୍ରତ୍ୟେକ ପରିବାର ଏବଂ ସମାଜ ସେମାନଙ୍କ ଶିଶୁସମ୍ପଦର ଭବିଷ୍ୟତ୍ ସମ୍ବନ୍ଧରେ ପୋଷଣ କରିଥାନ୍ତି ଅନେକ ସ୍ୱପ୍ନ, ଅନେକ ସମ୍ଭାବନା । ନିଜର ପୁଅ ଯେଉଁ ସ୍କୁଲ୍‌ରେ ପଢୁଥିଲା, ସେହି ସ୍କୁଲର ପ୍ରଧାନ ଶିକ୍ଷକଙ୍କ ପାଖକୁ ଆବ୍ରାହାମ୍ ଲିଙ୍କନ୍ ଲେଖିଥିଲେ-

''ମହାଶୟ ! ମୋ' ପୁଅକୁ ଶିଖେଇବେ ଯେ ଦୁନିଆର ସବୁ ଲୋକ ନ୍ୟାୟବାନ୍ ନୁହନ୍ତି କି ସବୁ ଲୋକ ସତ୍ୟବାନ୍ ମଧ୍ୟ ନୁହନ୍ତି । ତାକୁ ମଧ୍ୟ କହିବେ ଯେ ପୃଥିବୀରେ ପ୍ରତି ବଦମାସ୍ ବ୍ୟକ୍ତିପାଇଁ ରହିଛନ୍ତି ଜଣେ ମହତ୍ ବ୍ୟକ୍ତି ଏବଂ ପ୍ରତ୍ୟେକ ସ୍ୱାର୍ଥପର ରାଜନୀତିଜ୍ଞପାଇଁ ଅଛନ୍ତି ଜଣେ ନିଃସ୍ୱାର୍ଥପର ନେତା । ତାକୁ ପୁଣି ଶିକ୍ଷାଦେବେ ଯେ ଶତ୍ରୁଟିଏ ରହିଥିଲେ ବି ନିଶ୍ଚୟ ରହିଥିବେ ଜଣେ ମିତ୍ର । ମୁଁ ଜାଣେ ଯେ ତାକୁ ଶିକ୍ଷାପ୍ରଦାନ କରିବା ବେଶ୍ ଆୟାସସାଧ୍ୟ ଏବଂ ସମୟସାପେକ୍ଷ । ତଥାପି ଯଦି ପାରନ୍ତି, ତେବେ ତାକୁ ଅବଗତ କରାଇବେ ଯେ ପାଞ୍ଚ ଡଲାର୍ କେଉଁଠୁ ପାଇଯିବା ତୁଳନାରେ ଗୋଟିଏ ବି ଡଲାର୍ ଅର୍ଜନ କରିପାରିବାର ମହତ୍ତ୍ୱ ବେଶି । ପରାଜୟକୁ ନମ୍ରତାର ସହ ଗ୍ରହଣ କରିନେବାକୁ ଶିଖେଇବା ସଙ୍ଗେ ସଙ୍ଗେ ବିଜୟକୁ ମନଭରି ଉପଭୋଗ କରିବା ମଧ୍ୟ ଶିଖେଇବେ ତାକୁ । ଯଦି ପାରିବେ, ତେବେ ଈର୍ଷାଦ୍ୱେଷର ଭାବନା ତାହାଠାରେ ପୂରେଇ ଦେବେନି । ଏକାନ୍ତରେ ହସିପାରିବାର ଗୋପନୀୟ କଳା ଶିଖେଇଦେବେ ତାକୁ । ସେ ବେଳହୁଁ ଜାଣିନେବା ଦରକାର ଯେ ନିର୍ଯାତକମାନଙ୍କୁ

ପରାଭୂତ କରିବା ସବୁଠାରୁ ସହଜ । ମହାଶୟ, ଯଦି ପାରିବେ ତ ତାକୁ ପୁସ୍ତକ ପଠନର ମହତ୍ତ୍ୱ ବିଷୟରେ ଧାରଣା ଦେବେ । ପୁଣି ସେ ଯେ କେବଳ ସର୍ବଦା ପଠନରେ ରତ ରହିଥିବ ତାହା ନୁହେଁ, ଆକାଶରେ ପକ୍ଷ ମେଲି ଆନନ୍ଦରେ ଉଡ଼ି ବୁଲୁଥିବା ପକ୍ଷୀ ଓ ପାର୍ବତ୍ୟ ଉପତ୍ୟକାର ସବୁଜିମାରେ ଶୋଭିତ ପୁଷ୍ପଗୁଡ଼ିକୁ ଚୁମି ଚାଲିଥିବା ମହୁମାଛିର ଅନନ୍ତ ରହସ୍ୟ ବିଷୟରେ ଭାବିବା ନିମନ୍ତେ ମଧ୍ୟ ତାକୁ ଦେବେ କିଛି ଅବସର । ତାକୁ କହିଦେବେ ଯେ ଶିକ୍ଷାଳୟରେ ପ୍ରତାରଣାର ଆଶ୍ରୟ ନେଇ କୃତକାର୍ଯ୍ୟ ହେବା ଅପେକ୍ଷା ଅକୃତକାର୍ଯ୍ୟ ହେବା ଅଧିକ ସମ୍ମାନଜନକ । ସବୁଲୋକ ତାକୁ ଭ୍ରାନ୍ତ ବୋଲି କହିଲେ ମଧ୍ୟ ସେ ଯେପରି ନିଜର ଧାରଣା ପ୍ରତି ଏକନିଷ୍ଠ ଏବଂ ବିଶ୍ୱସ୍ତ ରହେ ତାକୁ ସେ କଥା ମଧ୍ୟ ଶିଖେଇଦେବେ । ସଜ୍ଜନମାନଙ୍କ ପ୍ରତି ମାର୍ଜିତ ଏବଂ ଦୁର୍ଜନମାନଙ୍କ ପ୍ରତି ଅମାର୍ଜିତ ଆଚରଣ କରିବା ବିଷୟରେ ମଧ୍ୟ ଶିକ୍ଷା ଦେବେ ତାକୁ । ପ୍ରତ୍ୟେକ ବ୍ୟକ୍ତି କୌଣସି ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀକୁ ଅନୁସରଣ କଲେ ବି ମୋ' ପୁଅ ଯେପରି ଉକ୍ତ ଗୋଷ୍ଠୀକୁ ଅନ୍ଧଭାବେ ଅନୁସରଣ ନ କରେ, ଏହି ଶକ୍ତି ସଞ୍ଚୟ କରିବା ନିମନ୍ତେ ତାକୁ ଶିକ୍ଷାଦେବାକୁ ମୋ'ର ଅନୁରୋଧ । ତାକୁ ଉପଦେଶ ଦେବେ ଯେ ସେ ସମସ୍ତଙ୍କ କଥା ଧୈର୍ଯ୍ୟର ସହ ଶୁଣିବ କିନ୍ତୁ ସତ୍ୟର କଷଟି ପଥରରେ ପରଖି ସାରି ଅବଶେଷରେ ସତ୍ୟକୁ ହିଁ ଗ୍ରହଣ କରିନେବ ।''

''ମହାଶୟ ! ଯଦି ପାରିବେ ତ ସବୁଠାରୁ ଦୁଃଖଦ ପରିସ୍ଥିତିରେ ମୁହଁରେ ହସ ଫୁଟାଇବାର କଳା ମଧ୍ୟ ତାକୁ ବତେଇଦେବେ । ତାକୁ କହିବେ ଯେ ସେ ଯଦି କାହାପାଇଁ ନିଜ ଆଖିରୁ ଲୁହ ଝରେଇଦିଏ, ତାହା ଆଦୌ ଲଜ୍ଜାକର ନୁହେଁ । ସେ ଯେପରି ମନୁଷ୍ୟବିଦ୍ୱେଷୀମାନଙ୍କୁ ଉପେକ୍ଷା କରେ ଓ କାହାରି ପ୍ରତି ଅଧିକମାତ୍ରାରେ ଆସକ୍ତ ହୋଇ ନ ପଡ଼େ ଏ ବିଷୟରେ ମଧ୍ୟ ସେ ଶିକ୍ଷାଗ୍ରହଣ କରିବା ଉଚିତ । ସେ ତା'ର ସମସ୍ତ ଶାରୀରିକ ଏବଂ ମାନସିକ ସାମର୍ଥ୍ୟକୁ ଅଧିକ ମୂଲ୍ୟ ଦେଉଥିବା ବ୍ୟକ୍ତିକୁ ବରଂ ବିକି ଦେଇପାରେ, କିନ୍ତୁ ତା'ର ଆତ୍ମା ଏବଂ ହୃଦୟକୁ ମନେକରେ ଅମୂଲ୍ୟ । ଦୟାକରି ତାକୁ ପରାମର୍ଶ ଦେବେ ଯେ ଲୋକଙ୍କର କୁତ୍ସିତ ଗର୍ଜନ ତର୍ଜନକୁ ନ ଶୁଣିବାପାଇଁ ସେ ହୁଏତ କାନ ବନ୍ଦ କରିଦେଇପାରେ, କିନ୍ତୁ ନିଜର ମତକୁ ଯଥାର୍ଥ ବୋଲି ମନେ କଲେ ଦୃଢ଼ଭାବରେ ମୁକାବିଲା କରିପାରେ ସେମାନଙ୍କୁ ।''

''ମହାଶୟ ! ତାକୁ ସବୁକଥା ଟିକିଏ ବୁଝେଇ ସୁଝେଇ କହିବେ ସିନା, ହେଲେ ତା' ପ୍ରତି ଆଦୌ ଅସ୍ୱାଭାବିକ କୋମଳତା ପ୍ରଦର୍ଶନ କରିବେନି । କାରଣ ଅଗ୍ନିରେ ଭଲଭାବରେ ଆଉଟା ନ ହେଲେ ଉତ୍କୃଷ୍ଟମାନର ଷ୍ଟିଲ୍ ପ୍ରସ୍ତୁତି ସମ୍ଭବ ନ ହେଲା ଭଳି

ନିରବଚ୍ଛିନ୍ନ ପ୍ରୟାସ ମାଧମରେ ଶିକ୍ଷାଲାଭ ନ କଲେ ତା'ର ଶିକ୍ଷା ସାର୍ଥକ ହୋଇପାରିବ ନାହିଁ । ଅଧୈର୍ଯ୍ୟ ହେବାର ସାହସ ସଞ୍ଚୟ କରୁ ସେ, କିନ୍ତୁ ସାହସୀ ହେବା ନିମନ୍ତେ ତାହାଠାରେ ପ୍ରକାଶ ପାଉ ଅସୀମ ଧୈର୍ଯ୍ୟ । ତା'ଠାରେ ଯେପରି ଗଭୀର ଆତ୍ମବିଶ୍ୱାସ ଜାଗ୍ରତ ହୁଏ, ସେ ଦିଗରେ ତାକୁ ନିଶ୍ଚୟ ଶିକ୍ଷା ଦେବାକୁ ମୋର ବିନମ୍ର ଅନୁରୋଧ । କାରଣ ଏହା ଫଳରେ ମଣିଷ ଜାତି ଉପରେ ସେ ପୋଷଣ କରିପାରିବ ଗଭୀର ଆସ୍ଥା ।''

''ମହାଶୟ ! ଆପଣଙ୍କ ପାଖରେ ଏତେଗୁଡ଼ାଏ ବରାଦ ମୋ'ର । ଦୟାପୂର୍ବକ ଚେଷ୍ଟା କରି ଦେଖନ୍ତୁ ଆପଣଙ୍କଦ୍ୱାରା କଅଣ ହୋଇପାରିବ । ସେ ମୋ'ର ପୁଅ ତ, ଆଉ ମୁଁ ତାକୁ ଖୁବ୍ ଭଲପାଏ ।''

# ଫାଷ୍ଟ ଫୁଡ୍ : ପିଲାମାନଙ୍କର ପ୍ରଧାନ ଶତ୍ରୁ

**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**

*କୁହାଯାଉଛି ଯେ 'ଫାଷ୍ଟଫୁଡ୍ କିଲ୍ସ ଫାଷ୍ଟ' ବା ଫାଷ୍ଟ ଫୁଡ୍ ଖାଇଚାଲିଲେ ମୃତ୍ୟୁ ତୁରନ୍ତ ପହଞ୍ଚିଯାଏ । କିନ୍ତୁ ଏଭଳି ଖାଦ୍ୟ ଖାଇବା ନ ଖାଇବା ନିଜ ହାତରେ କଥା । ଫାଷ୍ଟ ଫୁଡ୍ ଖାଇ ମୃତ୍ୟୁକୁ ଆମନ୍ତ୍ରଣ ଜଣେଇବା ଅବିବେକିତା ।*

## ବିଜ୍ଞାପନ ଓ ଶିଶୁସ୍ୱାସ୍ଥ୍ୟ

ଛୋଟ ପରିବାର, ଚାକିରିଆ ମାଆ, ଅଳ୍ପ ବୟସରେ ସ୍କୁଲ୍‌ରେ ଭର୍ତ୍ତି, ଟେଲିଭିଜନ୍‌ର ଅତ୍ୟଧିକ ପ୍ରଭାବ, ପରିବାରର ଆର୍ଥିକ ସ୍ୱଚ୍ଛଳତା ଏବଂ ପିଲାମାନଙ୍କୁ ହାତଖର୍ଚ୍ଚ ଦେବା ଚଳଣି ଏବେ ପିଲାମାନଙ୍କ ଖାଦ୍ୟାଭ୍ୟାସକୁ ପୂରାପୂରି ପରିବର୍ତ୍ତନ କରିଦେଲାଣି । କେବଳ ସେତିକି ନୁହେଁ; ଜୀବନ ପ୍ରତି ସେମାନଙ୍କର ଆଭିମୁଖ୍ୟ ଏବଂ ସେମାନଙ୍କ ସ୍ୱାସ୍ଥ୍ୟ ଉପରେ ମଧ୍ୟ ଅନୁଭୂତ ହେଲାଣି ଏହାର ପ୍ରଭାବ । ଗଣମାଧ୍ୟମରେ ପ୍ରସାରିତ ବିଜ୍ଞାପନଗୁଡ଼ିକ ମଧ୍ୟ ସେମାନଙ୍କ ଖାଦ୍ୟରୁଚି, ଆଚରଣ ଏବଂ ଚରିତ୍ରକୁ ବଦଳେଇଦେବାରେ ଲାଗିଛି । ସ୍କୁଲ୍‌ରେ ସଦ୍ୟ ପାଦ ଦେଇଥିବା ପିଲାମାନଙ୍କଠାରୁ ଆରମ୍ଭକରି କଲେଜ୍‌ରେ ପଢୁଥିବା ଛାତ୍ରଛାତ୍ରୀମାନଙ୍କ ପର୍ଯ୍ୟନ୍ତ ସବୁ ପିଲା ଏହାର ଶିକାର । ପିଲାମାନଙ୍କର ଖାଦ୍ୟପସନ୍ଦ ତଥା ନିର୍ବାଚନକୁ ବହୁଳ ଭାବରେ ପ୍ରଭାବିତ କରିଚାଲିଛି ଟେଲିଭିଜନ୍‌ରେ ପ୍ରସାରିତ ବିଜ୍ଞାପନ । ଖବରକାଗଜ, ମ୍ୟାଗାଜିନ୍, ପୋଷ୍ଟର୍, ହୋର୍ଡିଂ, ଜାମାପ୍ୟାଣ୍ଟ୍ ଓ ନିତିଦିନିଆ ବ୍ୟବହୃତ ସାମଗ୍ରୀ ଇତ୍ୟାଦି ସବୁଥିରେ ଖାଦ୍ୟସଂପର୍କିତ ବାର୍ତ୍ତା ।

ଟେଲିଭିଜନ୍ ଯୋଗୁଁ ପିଲାମାନଙ୍କର ଖେଳପଡ଼ିଆରେ ଦେଖାମିଳୁନି । ଟେଲିଭିଜନ ଦେଖିଚାଲିବାଯୋଗୁଁ ସେମାନେ ହୋଇପଡୁଛନ୍ତି ଅଳସୁଆ । ପୁଣି ଟେଲିଭିଜନ ଦେଖିଚାଲିଥିବାବେଳେ ଭଜାଭଜି, ଛଣାଛଣି ଖାଦ୍ୟ ପାଟିରେ ପକେଇ ଚାଲିବା ଓ ମୃଦୁପାନୀୟ ପିଇବାବେଳେ ସେମାନେ ଯେ କେତେ ପରିମାଣର ଅଖାଦ୍ୟ(!) ଖାଇସାରିଲେଣି, ସେଥିପ୍ରତି ସେମାନଙ୍କର ଧ୍ୟାନ ରହୁ ନାହିଁ । ଧ୍ୟାନ ରହିବା ସମ୍ଭବ ନୁହେଁ ମଧ୍ୟ । କାରଣ ପାଟି ଓ ହାତ ଖାଦ୍ୟ ଖାଇବାରେ ବ୍ୟସ୍ତଥିବାବେଳେ ଆଖି ଓ ମନ ଲାଖିରହିଛି ଟେଲିଭିଜନ୍ ପରଦା ଉପରେ । ଫଳରେ ଧୀରେ ଧୀରେ ସେମାନଙ୍କଠାରେ

ଜମିଚାଲିଛି ଚର୍ବି । ଉଦାହରଣ ସ୍ୱରୂପ, ଦିନକୁ ଅଧିକ ୫୦ କିଲୋକ୍ୟାଲୋରୀର ଖାଦ୍ୟ ଖାଇନେଲେ ଚାରିବର୍ଷ ପରେ ଦେହରେ ୧୦ କିଲୋଗ୍ରାମ୍ ଓଜନର ଚର୍ବି ଜମି ଯାଇଥିବ ।

ବର୍ତ୍ତମାନ ବିଜ୍ଞାପନ ହୋଇଛି ବ୍ୟବସାୟ ବୃଦ୍ଧି କରିବାର ବଳିଷ୍ଠ ମାଧ୍ୟମ ଏବଂ ଏହା ବିପନ୍ନ କରିଚାଲିଛି ଶିଶୁସ୍ୱାସ୍ଥ୍ୟକୁ ।

## ଜଙ୍କ୍‌ଫୁଡ୍/ଫାଷ୍ଟ୍‌ଫୁଡ୍

ଆପଣମାନେ ଏବେ ବାରମ୍ବାର 'ଜଙ୍କ୍‌ଫୁଡ୍' ଓ 'ଫାଷ୍ଟ୍‌ଫୁଡ୍' ନାଁ ଶୁଣୁଥିବେ । ଇଂରାଜୀରେ 'ଜଙ୍କ୍'ର ଅର୍ଥ 'ଆବର୍ଜନା', 'ମୂଲ୍ୟହୀନ । ପୁଣି ଓଡ଼ିଆ ଭାଷାରେ 'ଜଙ୍କ୍'ର ଅର୍ଥ କଳଙ୍କି । ତେଣୁ ଯେଉଁ ଖାଦ୍ୟ ଆବର୍ଜନା ସହ ତୁଳନୀୟ, ଯାହାର ଖାଦ୍ୟ ମୂଲ୍ୟ କ୍ଷତିକାରକ, ତାକୁ 'ଜଙ୍କ୍ ଫୁଡ୍' ବା 'କଳଙ୍କିଲଗା ଖାଦ୍ୟ' ଭାବରେ ନାମକରଣ କରିବା ଯଥାର୍ଥ । ପୁଣି ଏଭଳି ଖାଦ୍ୟ ପ୍ରସ୍ତୁତ କରିବାରେ ବେଶି ସମୟ ଲାଗେ ନାହିଁ କି ଖାଇବାପାଇଁ ବେଶି ସମୟ ଖର୍ଚ୍ଚ କରିବାକୁ ପଡ଼େ ନାହିଁ । ତରତରରେ ଓ ଠିଆ ଠିଆ ଖାଇବାପାଇଁ



ଫାଷ୍ଟ୍‌ଫୁଡ୍ ଦୋକାନ ସାମ୍ନାରେ ଖାଉଥିବା କେତୋଟି ପିଲା

ବେଶ୍ ଉପଯୋଗୀ ହୋଇଥିବାରୁ ଏହାକୁ କୁହାଯାଉଛି 'ଫାଷ୍ଟ୍ ଫୁଡ୍' ବା 'ସଅଳଖିଆ ଖାଦ୍ୟ' । କେହି କେହି ଏହାକୁ 'ଠିଆ ଜଳଖିଆ' ବୋଲି କହନ୍ତି ।

ଏଭଳି ଖାଦ୍ୟ ପ୍ରସ୍ତୁତ କରିବା ନିମନ୍ତେ ବିବିଧ ପ୍ରକ୍ରିୟା ଅବଲମ୍ବନ କରାଯାଇଥାଏ । ତେଣୁ ଏଗୁଡ଼ିକ ଅତିମାତ୍ରାରେ ପ୍ରକ୍ରିୟାକୃତ ବା 'ପ୍ରସେସ୍‌ଡ୍' । ଏଥିରୁ ମିଳେ ଅତିମାତ୍ରାରେ କାଲୋରୀ ବା ଶକ୍ତି । ଏହାର ପୌଷ୍ଟିକ ମୂଲ୍ୟ ସୀମିତ । କାରଣ ଏଭଳି ଖାଦ୍ୟଦ୍ରବ୍ୟରୁ ସବୁପ୍ରକାରର ଖାଦ୍ୟ ଉପାଦାନ ଦରକାରୀ ପରିମାଣରେ ଓ ଅନୁପାତରେ ମିଳିପାରେ ନାହିଁ । ପୁଣି ଏଥିରୁ ମିଳେ ବେଶି ପରିମାଣର ସଂପୃକ୍ତ ସ୍ନେହସାର (ଲହୁଣି, ଘିଅ, ତେଲ, ଚର୍ବି, ଛେନା), ବେଶି ପରିମାଣର ଶର୍କରା (ଚିନି କି ଗୁଡ଼), ବେଶି ଲୁଣ ଓ ବେଶି

କୋଲିଷ୍ଟିରଲ୍ । ପୁଣି ମିଶିଥାଏ ଭଳିକି ଭଳି ରଙ୍ଗ ଓ ମହକ ଛାଡୁଥିବା ଦ୍ରବ୍ୟ । ଭିଟାମିନ୍, ଧାତୁସାର ଏବଂ ବିଶେଷକରି ଖୁବ୍ କମ୍ ପରିମାଣରେ ଆବଶ୍ୟକ ପଡୁଥିବା ଉପାଦାନଗୁଡ଼ିକର ବେଶ୍ ଅଭାବ ଥାଏ 'ଜଙ୍କ୍ ଫୁଡ୍' ତଥା ଫାଷ୍ଟ ଫୁଡ୍‌ରେ । ତାହାଛଡ଼ା ଫାଷ୍ଟ୍ ଫୁଡ୍‌ରେ ସ୍ୱାସ୍ଥ୍ୟ ଅନୁକୂଳରୂପେ ସ୍ୱୀକୃତ ଖାଦ୍ୟତନ୍ତୁ ବା ଡାଏଟାରୀ ଫାଇବର୍ ଏବଂ ଉଦ୍ଭିଜ ରସାୟନ ବା ଫାଇଟୋକେମିକାଲ୍ସର ପରିମାଣ ଅତି ନଗଣ୍ୟ । ତେଣୁ ସଂକ୍ଷେପରେ କହିଲେ, ଯେଉଁସବୁ ଉପାଦାନର ଖାଦ୍ୟ ପ୍ରତିକୂଳ ପ୍ରଭାବ ରହିଛି, ସେହିସବୁ ଉପାଦାନରେ ଜଙ୍କ୍ ଫୁଡ୍ ଭରପୂର । ଯେଉଁ ସବୁ ଉପାଦାନର ଖାଦ୍ୟ-ଅନୁକୂଳ ପ୍ରଭାବ ରହିଛି, ସେହିସବୁ ଉପାଦାନରେ ଜଙ୍କ୍ ଫୁଡ୍ ନିକମା । ତେଣୁ ଗୁରୁତର ରୋଗ ଜାତ କରେଇବାରେ ଏହା ଏବେ ଯଥେଷ୍ଟ ଅପଖ୍ୟାତି ବହନ କରି ଚାଲିଛି ।

ଏହା ମଧ ପ୍ରମାଣିତ ଯେ ବୟସ୍କବ୍ୟକ୍ତିଙ୍କଠାରେ ପରିଲକ୍ଷିତ ହେଉଥିବା ଗୁରୁତର ରୋଗମାନଙ୍କର ମୂଳଦୁଆ ପଡ଼ିଥାଏ ଶୈଶବରେ । ସୁତରାଂ ଏବକାର ପିଲାମାନେ ଫାଷ୍ଟ ଫୁଡ୍ ଖାଇବା ପ୍ରତି ଅତ୍ୟଧିକ ରୁଚି ରଖିବା ଫଳରେ ଅଧିକ ଅର୍ଥ ବ୍ୟୟକରି ହୃଦ୍‌ରୋଗ, ଉଚ୍ଚରକ୍ତଚାପ, ଡାଇବେଟିସ୍, ପୃଥୁଳତା, ଗଣ୍ଠିବାତ ଏବଂ କର୍କଟରୋଗ ଇତ୍ୟାଦି କିଣି ଚାଲିଛନ୍ତି । ଫଳରେ କିଛି ଦଶନ୍ଧି ପୂର୍ବରୁ ଏଭଳି ରୋଗ ଚାଳିଶବର୍ଷ ବୟସରେ ପହଞ୍ଚିବା ପରେ ପ୍ରକାଶ ପାଉଥିବାବେଳେ ସଂପ୍ରତି ପ୍ରାକ୍‌ଯୁବାବସ୍ଥାରେ ମଧ ଏଭଳି ରୋଗର ଆବିର୍ଭାବ ବିରଳ ହୋଇ ରହି ନାହିଁ । କୋଡ଼ିଏ ବର୍ଷ ବୟସ ନ ହେଉଣୁ ଭାରତୀୟ କିଶୋରମାନେ ହାର୍ଟ ଆଟାକ୍‌ର ଶିକାର ହୋଇପଡ଼ିବା ଚିକିତ୍ସକମାନଙ୍କୁ ବିସ୍ମୟାଭୂତି କରିପକାଇଛି । ତେଣୁ ଯଥାର୍ଥରେ କୁହାଯାଉଛି – 'ଫାଷ୍ଟ ଫୁଡ୍ କିଲ୍ସ ଫାଷ୍ଟ୍' ବା 'ଫାଷ୍ଟ ଫୁଡ୍ ହେଉଛି ଅକାଳ ମୃତ୍ୟୁର କାରଣ' ।

ପିଲାମାନଙ୍କର ଖାଦ୍ୟକୁ ବହୁଳ ଭାବରେ ପ୍ରଭାବିତ କରିଥାଏ ଖାଦ୍ୟର ସ୍ୱାଦ । ତେଣୁ ପିଲା ପାଟିରେ ସୁଆଦିଆ ଖାଦ୍ୟ ଲାଗିଗଲେ ସେ ତା'ର ପାଲରେ ପଡ଼ିଯାଏ । କହିବାକୁ ଗଲେ ଲୋକେ ନିଶାଦ୍ରବ୍ୟପ୍ରତି ଆସକ୍ତ ହୋଇପଡ଼ିବା ପ୍ରକାରେ ପିଲାଏ ସୁଆଦିଆ ଖାଦ୍ୟପ୍ରତି ଆସକ୍ତ ହୋଇପଡ଼ନ୍ତି । ଆସକ୍ତି ସୃଷ୍ଟି ହେଲେ ତାକୁ ବର୍ଜନ କରିବା ଆଦୌ ସହଜସାଧ ହୋଇ ନ ଥାଏ । ଖାଦ୍ୟର ସ୍ୱାଦ ବୃଦ୍ଧି କରିଥାଏ, ତେଲ, ଘିଅ, ଲହୁଣି, ମିଠା ଓ ଲୁଣ । ତେଣୁ ପିଲାମାନେ ତେଲ କି ଘିଅରେ ଛଣା ହୋଇଥିବା ଖାଦ୍ୟ ଓ ଛଣା ହୋଇ ପ୍ୟାକେଟ୍‌ରେ ବିକ୍ରି ହେଉଥିବା ଖାଦ୍ୟ ଖାଇବାପାଇଁ ବେଶି ପସନ୍ଦ କରିଥାନ୍ତି । ଅଧିକାଂଶ ପ୍ରକାରର ଖାଦ୍ୟରେ ଲହୁଣି ପକେଇ, ତା'ର ସ୍ୱାଦବୃଦ୍ଧି କରାଯାଇଥାଏ । ଜନ୍ମ ହେବାବେଳୁ ତ ମିଠାଖାଦ୍ୟ ପ୍ରତି ଜିଭର ଲୋଭ । ତାହାଛଡ଼ା ଚାଟ୍, ଚିପ୍‌ସ, ବାରମଜା, ଫ୍ରାଏଡ୍ ଫୁଡ୍, ଫ୍ରାଏମ୍, କେକ୍, ପାଷ୍ଟ୍ରୀ, ପାଟିସ୍ ଇତ୍ୟାଦି ପିଲାମାନଙ୍କୁ ଆକର୍ଷିତ କରୁଥିବା ବହୁପ୍ରକାରର ଖାଦ୍ୟ ଲୁଣିଆ । ସୁଆଦିଆ ଖାଦ୍ୟକୁ ବେଶିଥର ଖାଇବାପାଇଁ ପାଇଗଲେ, ସେହିପ୍ରକାରର ଖାଦ୍ୟ ଖାଇବା ସେମାନଙ୍କ ଅଭ୍ୟାସରେ ପଡ଼ିଯିବା ସ୍ୱାଭାବିକ ।

ଏବେ ବହୁ ପରିବାରର ଆର୍ଥିକ ଅବସ୍ଥାରେ ଉନ୍ନତି ପରିଲକ୍ଷିତ ହେଉଛି । ବାପମା' ଉଭୟେ ରୋଜଗାରିଆ ହେଲେ ସେମାନେ ପ୍ରାୟତଃ ଅମିତବ୍ୟୟୀ ହୋଇପଡ଼ନ୍ତି । ପରିବାରରେ ତେଲ, ଘିଅ, ମିଠା ଇତ୍ୟାଦି ବ୍ୟୟବହୁଳ ଖାଦ୍ୟର ଆଦର ବଢ଼ିଯାଏ । ପୁଣି ଏବେ ଅନେକ ଭୋଜିଭାତରେ ଅଧିକ ତେଲଘିଅ ପଡ଼ିଥିବା ମାଛ, ମାଂସ, ଛେନା ଇତ୍ୟାଦି ବ୍ୟଞ୍ଜନକୁ ବେଶି ଗୁରୁତ୍ୱ ଦିଆଯାଉଛି । ମିଠା, ଆଇସ୍‌କ୍ରିମ୍, ପାୟସ୍ ଇତ୍ୟାଦି ଅପରିହାର୍ଯ୍ୟ ହୋଇପଡ଼ିଲାଣି ଭୋଜିରେ । ଫଳରେ ସ୍ନେହସାର ଜାତୀୟ ଓ ଶ୍ୱେତସାର ଜାତୀୟ ଖାଦ୍ୟ ଖାଇବାରେ ଆଉ କଟକଣା ରହୁ ନାହିଁ । ଭୋଜିଭାତରେ ସାଦା ଅନ୍ନ, ଡାଲି, ଶାଗ, ପନିପରିବା ତରକାରି ହେଲାଣି ସ୍ୱପ୍ନ । ଯଦିବା ତାହା ପ୍ରସ୍ତୁତ ହେଉଛି, କୌଣସି ଅତିଥି ତା'ର ପାଖ ମାଡ଼ୁ ନାହାନ୍ତି ।

## ମୃଦୁପାନୀୟର କୁପ୍ରଭାବ

ପୁଣି ସହରାଞ୍ଚଳ ଓ ଗ୍ରାମାଞ୍ଚଳର ବହୁ ପିଲାଙ୍କୁ ପ୍ରଲୁବ୍ଧ କରିଛି ମୃଦୁ ପାନୀୟ ବା ସଫ୍ଟ ଡ୍ରିଙ୍କ୍ସ । ଭୋଜି ଆସର, କ୍ରୀଡ଼ା ଆସର, ବନ୍ଧୁମେଳରେ ଖୁସିଗପର ଆସରରେ ବରାଦ ଦିଆଯାଉଛି ମୃଦୁପାନୀୟପାଇଁ । ଟେଲିଭିଜନ୍ ଦେଖିବା ଅବସରରେ ମୃଦୁପାନୀୟକୁ ମଝିରେ ମଝିରେ ପିଇବା ହେଲାଣି ଆଜିକାଲିକାର ଫେସନ୍ । ସେଥିମଧ୍ୟରୁ କେତେକ ସୋଡ଼ାଯୁକ୍ତ ତ କେତେକ ସୋଡ଼ାମୁକ୍ତ । କିନ୍ତୁ ସବୁଥିରେ ରହିଛି ଶର୍କରା କିମ୍ବା ମିଠା ଲାଗୁଥିବା ଅନ୍ୟ କୌଣସି ଉପାଦାନ । ଫଳରେ ଶରୀରରେ ଚର୍ବି ଜମେଇବାରେ ଏହାର ଅବଦାନକୁ ହେୟଜ୍ଞାନ କରିହେବ ନାହିଁ । ପୃଥୁଳତାପାଇଁ ସାହାଯ୍ୟ କରିବା ସଂଗେ ସଂଗେ ରକ୍ତରେ ସ୍ନେହସାରୀୟ ଉପାଦାନ (କୋଲିଷ୍ଟିରଲ୍ ଓ ଟ୍ରାଇଗ୍ଲିସେରାଇଡ୍)ର ପରିମାଣ ବୃଦ୍ଧି କରିବାରେ ମଧ୍ୟ ଏହା ସହାୟକ ହୋଇଥାଏ । ପିଲାମାନଙ୍କଠାରେ ଦନ୍ତକ୍ଷୟ ବା ଦାନ୍ତର କ୍ୟାରିଜ୍ ରୋଗ ସୃଷ୍ଟି କରିବାରେ ମଧ୍ୟ ଅନୁକୂଳ ଭୂମିକା ଗ୍ରହଣ କରିଥାଏ ମୃଦୁପାନୀୟ । ତାହାଛଡ଼ା ମୃଦୁପାନୀୟ ମୁଖ୍ୟତଃ ଅମ୍ଳଜାତୀୟ । ଅମ୍ଳଜାତୀୟ ଏହି ମୃଦୁପାନୀୟ ପିଇବାର ଅଭ୍ୟାସ ରଖିଲେ ତାହା ଧୀରେ ଧୀରେ ହାଡ଼ରେ ଜମିଥିବା ଧାତୁସାର କ୍ଷୟ କରିଚାଲେ । ଫଳରେ ଦୃଢ଼ ତଥା ଶକ୍ତ ହାଡ଼ କ୍ରମେ ଛିଦ୍ରିତ ତଥା ଦୁର୍ବଳ ହୋଇ ଜାତ କରେ 'ଅଷ୍ଟିଓପୋରୋସିସ୍' ରୋଗ । ଅଷ୍ଟିଓପୋରୋସିସ୍ ରୋଗ ହେଲେ ହାଡ଼ର ଭଙ୍ଗୁରତା ବଢ଼ିଯାଏ । ତେଣୁ ସାମାନ୍ୟ ଆଘାତ ପାଇଲେ ଭାଙ୍ଗିଯାଏ ହାଡ଼ । ବିଶେଷକରି ଝିଅମାନଙ୍କ ହାଡ଼ ଦୁର୍ବଳ ହୋଇପଡ଼ିଲେ ବିବାହ ପରେ ଗର୍ଭସ୍ଥ ଶିଶୁର ହାଡ଼ ଦୁର୍ବଳ ହୋଇପଡ଼ିବା ସଙ୍ଗେ ସଙ୍ଗେ ଶିଶୁ ଭୂମିଷ୍ଠ ହେବାବେଳେ ଜାତ ହୁଏ ସମସ୍ୟା ।

ପୁଣି ମୃଦୁପାନୀୟରେ ଥାଏ କାଫିନ୍ । କେତେକ ପିଲାଙ୍କଠାରେ କାଫିନ୍ ଯୋଗୁଁ ସୁନିଦ୍ରା ହୁଏ ନାହିଁ । ତାହାଛଡ଼ା ସେଥିରେ ମିଶିଥିବା ରଙ୍ଗ ଓ ଅନ୍ୟାନ୍ୟ ଉପାଦାନ ଯୋଗୁଁ ପ୍ରକାଶ ପାଇପାରେ ଆଲର୍ଜିର ଲକ୍ଷଣ ।

## ଉପକାରୀ ଉପାଦାନର ଅଭାବ

ତନ୍ତୁଜାତୀୟ ଖାଦ୍ୟ ଉପାଦାନ କେବଳ ଉଦ୍ଭିଦଜାତ ଦ୍ରବ୍ୟରୁ ମିଳିଥାଏ । କୌଣସି ନିରାମିଷ ଖାଦ୍ୟରୁ ଏହା ମିଳେ ନାହିଁ । ବୋଳଚାଉଳର ଭାତ, ଚୋକଡ଼ମିଶା ରୁଟି, ଚୋପାଲାଗିଥିବା ଡାଲି, ରାଜ୍‌ମା, ବୁଟ, ମଟର, ଶାଗ, ସବୁପ୍ରକାରର ପନିପରିବା – ବିଶେଷକରି ଚୋପାଛଡ଼ା ହୋଇ ନ ଥିବା ପରିବା ଓ ଚୋପା ଛଡ଼ା ହୋଇ ନ ଥିବା ଫଳରେ ତନ୍ତୁଜାତୀୟ ଉପାଦାନର ପରିମାଣ ବେଶି । ଏହିସବୁ ଉପାଦାନକୁ ଜୀର୍ଣ୍ଣ କରିବାର ଏନ୍‌ଜାଇମ୍ ଆମ ପରିପାକତନ୍ତ୍ରରେ ନାହିଁ । ତେଣୁ ଏଗୁଡ଼ିକ ମଳରେ ବାହାରିଯାଏ । ମଳରେ ବାହାରିଗଲାବେଳେ ନିଜ ସାଙ୍ଗରେ ନେଇଯାଏ କ୍ଷତିକାରୀ ଅନେକ ଉପାଦାନ । ତାହାଛଡ଼ା ତନ୍ତୁଜାତୀୟ ଖାଦ୍ୟ ଉପାଦାନ ରକ୍ତରେ ଗ୍ଲୁକୋଜ୍, କୋଲିଷ୍ଟିରଲ୍, ଟ୍ରାଇଗ୍ଲିସେରାଇଡ୍ ଇତ୍ୟାଦିର ପରିମାଣ ବୃଦ୍ଧି କରାଇଦିଏନି ।

ସେହିପରି ଉଦ୍ଭିଦଜାତ ଖାଦ୍ୟରେ ଥାଏ ଫାଇଟୋକେମିକାଲ୍ସ ବା ଉଦ୍ଭିଦଜାତ ଉପାଦାନମାନ । ଉଦ୍ଭିଦଜାତ ଖାଦ୍ୟରୁ ମିଳେ ଆଣ୍ଟିଅକ୍ସିଡାଣ୍ଟ୍ ବା ପ୍ରତିଜାରକ । ତନ୍ତୁ, ଫାଇଟୋକେମିକାଲ୍ସ ଓ ପ୍ରତିଜାରକ ଉପାଦାନଗୁଡ଼ିକ କର୍କଟରୋଗ ସମେତ ହୃଦ୍‌ରୋଗ, ଉଚ୍ଚରକ୍ତଚାପ, ପୃଥୁଳତା, ଡାଇବେଟିସ୍, ଗଣ୍ଠିବାତ, ପିତ୍ତକୋଷରେ ପଥର, ଦାନ୍ତର କାରିଜ୍‌ରୋଗ, କୋଷ୍ଠକାଠିନ୍ୟ, ଆପେଣ୍ଡିସାଇଟିସ୍ ଆଦି ଅନେକ ରୋଗରୁ ସୁରକ୍ଷାପ୍ରଦାନ କରିଥାଏ ।

କିନ୍ତୁ ଜଙ୍କ୍‌ଫୁଡ୍ ବା ଫାଷ୍ଟ୍ ଫୁଡ୍‌ରୁ ଏହିସବୁ ଉପାଦାନ ପ୍ରାୟତଃ ଆଦୌ ମିଳିପାରେ ନାହିଁ । ତାହାଛଡ଼ା, ଫାଷ୍ଟ ଫୁଡ୍‌ରୁ ମିଳିଯାଏ ବେଶି ଶର୍କରା, ବେଶି ତେଲଘିଅ ଆଦି ସ୍ନେହସାର, ବେଶି ଲୁଣ ଇତ୍ୟାଦି । ଏଗୁଡ଼ିକ ଅଧିକ ପରିମାଣରେ ଖାଇଲେ, ବିଶେଷକରି ପିଲାବେଳୁ ଖାଇଚାଲିଲେ ଏହାର ଭବିଷ୍ୟଦ୍ ପରିଣାମ ସ୍ୱାସ୍ଥ୍ୟଦୃଷ୍ଟିରୁ ଆଦୌ ଅନୁକୂଳ ନୁହେଁ । ପୁଣି ଭଜାଭଜି, ଛଣାଛଣି ଖାଦ୍ୟରୁ ଅଧିକ ସ୍ନେହସାର ମିଳିବା ସଂଗେ ସଂଗେ ବଳିପଡ଼ିଥିବା ଛଣାତେଲକୁ ବାରମ୍ବାର ଛାଣିବାପାଇଁ ବ୍ୟବହାର କଲେ ସେଥିରେ ଜାତ ହୋଇପଡ଼େ କର୍କଟ ରୋଗ ସୃଷ୍ଟିକାରୀ ଅନେକ ଉପାଦାନ । ପୁନଶ୍ଚ ଛାଣିବା ନିମନ୍ତେ ସାଧାରଣତଃ ବ୍ୟବହୃତ ହୋଇଥାଏ ବନସ୍ପତି । ଉଦ୍ଭିଦଜାତ ତୈଳରୁ ବନସ୍ପତି ପ୍ରସ୍ତୁତ ହୁଏ । ବନସ୍ପତି ପ୍ରସ୍ତୁତି ସମୟରେ ଜାତ ହୁଏ ଟ୍ରାନ୍ସ-ଫ୍ୟାଟି ଏସିଡ୍ ନାମକ ଉପାଦାନ । ଏହା ରକ୍ତରେ କୋଲିଷ୍ଟିରଲ୍‌ର ପରିମାଣ ବଢ଼େଇଦେଇ ହୃଦ୍‌ରୋଗ ଏବଂ ହାର୍ଟଆଟାକ୍‌ପାଇଁ ସୃଷ୍ଟି କରିପକାଏ ଅନୁକୂଳ ପରିବେଶ । ଭଜାଭଜି, ଛଣାଛଣି କରିବାଦ୍ୱାରା ଅନେକ ଖାଦ୍ୟ ଉପାଦାନ ଅତ୍ୟଧିକ ତାପ ସହି ନ ପାରି ନଷ୍ଟ ହୋଇଯାଆନ୍ତି । ତେଣୁ ସେଭଳି ଖାଦ୍ୟଦ୍ରବ୍ୟ ଖାଦ୍ୟ ଉପାଦାନଗୁଡ଼ିକର ଅଭାବ ଜାତ କରେଇବାର କାରଣ ହୋଇପଡ଼େ । କେବଳ ସେତିକି ନୁହେଁ, ଭାଜିବା, ଛାଣିବା ଓ ବାରମ୍ବାର ଗରମ କରିବା ଫଳରେ ଜାତ

ହୁଏ ଫ୍ରିରେଡିକାଲ୍ସ ବା ମୁକ୍ତମୂଳକ । ହୃଦ୍‌ରୋଗ, ହାର୍ଟ୍ ଆଟାକ୍, ଉଚ୍ଚ ରକ୍ତଚାପ, ଡାଇବେଟିସ୍, ଗଣ୍ଠିବାତ, ଦୀର୍ଘକାଳିକ ଫୁସ୍‌ଫୁସ୍‌ରୋଗ, ମୋତିଆବିନ୍ଦୁ ଓ କର୍କଟରୋଗ ଜାତ କରିବାରେ ଖଳନାୟକର ଭୂମିକା ଗ୍ରହଣ କରିଥାନ୍ତି ବିଭିନ୍ନ ମୁକ୍ତମୂଳକ ଉପାଦାନ ।

ସଂକ୍ଷେପରେ କହିଲେ, ବଜାରରେ ଡବା ଓ ପ୍ଲାଷ୍ଟିକ୍ ପ୍ୟାକେଟ୍ ଭିତରେ ରଖାଯାଇଥିବା ଫାଷ୍ଟ ଫୁଡ୍ ଓ ମୃଦୁପାନୀୟ ବିକ୍ରିକୁ ପ୍ରୋତ୍ସାହନ ଦେବାପାଇଁ ବିଜ୍ଞାପନରେ ବ୍ୟୟ କରାଯାଉଛି କୋଟି କୋଟି ଟଙ୍କା । ପିଲାମାନେ ଘରେ ଜଳଖିଆ ନ ଖାଇ ବଜାରରୁ ଏଗୁଡ଼ିକ କିଣି ଖାଇଚାଲିଛନ୍ତି । ପ୍ୟାକେଟ୍ ଖୋଲି ପାଟିରେ ପକେଇ ଚାଲିବା ଖୁବ୍ ସୁବିଧା । ପିଇବାପାଇଁ ପାଣି ବଦଳରେ ପିଲାଏ ମୃଦୁପାନୀୟକୁ ବେଶି ପସନ୍ଦ କରୁଛନ୍ତି । ଚୁଡ଼ା, କ୍ଷୀର କି ଦହି, କଦଳୀ, ଚିନି ଚକଟି ଜଳଖିଆ ଖାଇବା ହେଲାଣି ସ୍ୱପ୍ନ । ପିଲାମାନେ ରୁଟି ଖାଇବାପାଇଁ ନାକ ଟେକୁଛନ୍ତି । ମାଗି, ନୁଡଲ୍ସ, ବାମ୍ଭିନୋ, ଚାଓମିନ୍, ଇତ୍ୟାଦି ମିନିଟିଏ ଦୁଇମିନିଟ୍ ଭିତରେ ପ୍ରସ୍ତୁତ ହୋଇପାରୁଛି । ପାରମ୍ପରିକ ସକାଳ ଜଳଖିଆ ବଦଳରେ ଏଗୁଡ଼ିକ ପ୍ରତି ସେମାନେ ଅଧିକ ରୁଚି ରଖୁଛନ୍ତି । କର୍ମଜୀବୀ ମାଆମାନେ ମଧ୍ୟ ସକାଳୁ ସକାଳୁ ଛୋଟ ପିଲାଙ୍କୁ ସ୍କୁଲ୍ ପଠାଇବା ନିମନ୍ତେ ତରତରରେ ପ୍ରସ୍ତୁତ ହୋଇପାରୁଥିବା ଏଭଳି ଖାଦ୍ୟକୁ ବାଧ୍ୟ ହୋଇ ଖୁଆଇ ଚାଲିଛନ୍ତି । ଏପରିକି ପିଲାମାନେ ବାପାମାଆଙ୍କ ସାଙ୍ଗରେ ବସି ମଧ୍ୟାହ୍ନଭୋଜନ ଓ ରାତ୍ରିଭୋଜନ ନ କରି ସାଙ୍ଗସାଥୀମାନଙ୍କ ସାଙ୍ଗରେ ହୋଟେଲ୍‌ରେ ଖାଇବାପାଇଁ ଜିଦ୍ କରୁଛନ୍ତି ।

## ପିତାମାତା ଓ ଶିକ୍ଷକଶିକ୍ଷିକାମାନଙ୍କ କର୍ତ୍ତବ୍ୟ

ଫାଷ୍ଟ୍ ଫୁଡ୍ ବା ଜଙ୍କ୍ ଫୁଡ୍‌କୁ ନିରୁତ୍ସାହିତ କରିବାରେ ବାପମାଆଙ୍କଆଡୁ ଆନ୍ତରିକ ପ୍ରଚେଷ୍ଟା ନାହିଁ । ଏଗୁଡ଼ିକର କ୍ଷତିକାରୀ ପ୍ରଭାବ ସଂପର୍କରେ ଶିକ୍ଷକଶିକ୍ଷିକାମାନେ ମଧ୍ୟ ଛାତ୍ରଛାତ୍ରୀମାନଙ୍କୁ ସଚେତନ କରାଉ ନାହାନ୍ତି । ବରଂ ସ୍କୁଲ୍ ଓ କଲେଜ୍ ସାମନାରେ ଫାଷ୍ଟ ଫୁଡ୍ ପରିବେଷଣ କରୁଥିବା ଠେଲାଗାଡ଼ିଗୁଡ଼ିକର ଭିଡ଼ । ଏହା ବିରୋଧରେ ମଧ୍ୟ ସରକାରୀ ସ୍ତରରେ କୌଣସି ପଦକ୍ଷେପ ନିଆଯାଉ ନାହିଁ କି ଫାଷ୍ଟ ଫୁଡ୍/ଜଙ୍କ୍ ଫୁଡ୍ ତଥା ମୃଦୁପାନୀୟର ବିଜ୍ଞାପନ ଉପରେ କୌଣସି କଟକଣା ଆରୋପ କରାଯାଉ ନାହିଁ ।

କିନ୍ତୁ ଆମେ ଜାଣିଶୁଣି ଆମ ପିଲାମାନଙ୍କପାଇଁ ବିପଦକୁ ଆମନ୍ତ୍ରଣ କରି ଆଣୁଛେ । ଅଳ୍ପ ବୟସରୁ ସେମାନେ ଫାଷ୍ଟ୍ ଫୁଡ୍/ଜଙ୍କ୍ ଫୁଡ୍ ଓ ମୃଦୁପାନୀୟରେ ରୁଚି ରଖିବା ଫଳରେ ସେମାନଙ୍କ ଶରୀରରେ ଯାବତୀୟ ମାରାତ୍ମକ ରୋଗଗୁଡ଼ିକର ମୂଳଦୁଆ ପଡ଼ିଯାଉଛି । ଏହି ଅଭ୍ୟାସକୁ ପରବର୍ତ୍ତୀ ଅବସ୍ଥାରେ ବଜାୟ ରଖିବା ଫଳରେ ମୂଳଦୁଆ ହୋଇଚାଲିଛି ଅଧିକ ଦୃଢ଼ । ତେଣୁ ଯୁବାବସ୍ଥାରେ ପାଦ ଦେଉ ଦେଉ ସେମାନେ ବୟସ୍କବ୍ୟକ୍ତିମାନଙ୍କଠାରେ ପରିଲକ୍ଷିତ ହେଉଥିବା ରୋଗଗୁଡ଼ିକର ଶିକାର ହୋଇପଡୁଛନ୍ତି । ହେଲେ ସେତେବେଳକୁ 'ନେଡ଼ି ଗୁଡ଼ ଯାଇ କହୁଣିରେ' । ସେହି 'ଗୁଡ଼'କୁ ଚାଟିବାପାଇଁ ଯେତେ ଲମ୍ୱେଇଲେ ବି

ଜିଭ ପାଇବନି ! ପିତାମାତା ଓ ଶିକ୍ଷକଶିକ୍ଷିକାମାନେ ଚାହିଁଲେ ଏହି କୁଅଭ୍ୟାସରୁ ପିଲାମାନଙ୍କୁ ସୁରକ୍ଷିତ ରଖିପାରିବେ ।

ଡକ୍ଟର ଲିଣ୍ଡଲାହର୍ କହିଥିଲେ, ''ଆଧୁନିକ ଧନୀ ପରିବାରର ଲୋକେ ଯାହା ଖାଆନ୍ତି, ତା'ର ଏକତୃତୀୟାଂଶ ତାଙ୍କ ଶରୀରକୁ ପୋଷେ, ବାକି ଦୁଇତୃତୀୟାଂଶ ପୋଷେ ଡାକ୍ତରଙ୍କୁ ।'' କାରଣ ସେମାନଙ୍କ ଖାଦ୍ୟାଭ୍ୟାସ ହିଁ ସେମାନଙ୍କୁ ସବୁବେଳେ ରୋଗୀଣା କରି ରଖିଥାଏ ।

ଥୋମାସ୍ ଆଡିସନ୍‌ଙ୍କ ଉକ୍ତି ହେଲା, ''ଭଳିକି ଭଳି ରଙ୍ଗଥିବା ଓ ଭଳିକିଭଳି ମହକ ଦେଉଥିବା ଅତି ସୁଆଦିଆ ଖାଦ୍ୟଦ୍ରବ୍ୟଗୁଡ଼ିକରୁ ଯେତେ ଅନେଇ ରହିଥାନ୍ତି ପୃଥୁଳତା, ହୃଦ୍‌ରୋଗ, ଉଚ୍ଚ ରକ୍ତଚାପ, ମଧୁମେହ, ଗାଉଟ୍ ଓ କର୍କଟରୋଗ ଇତ୍ୟାଦି ।''

ତେଣୁ ବିଚାର କରନ୍ତୁ ତ; ଆମ ସନ୍ତାନସନ୍ତତିମାନେ ବଞ୍ଚିବାପାଇଁ ଖାଇବେ ନା ଖାଇବାପାଇଁ ବଞ୍ଚିବେ ? ଯେଉଁମାନେ ଖାଇବାପାଇଁ ବଞ୍ଚିଛନ୍ତି, ଖାଦ୍ୟ ସେମାନଙ୍କୁ ଆଦୌ ବଞ୍ଚେଇ ରଖିପାରେନି ।

# ପିଲାମାନଙ୍କ ସ୍ୱାସ୍ଥ୍ୟ ଉପରେ ଗଣମାଧ୍ୟମର କୁପ୍ରଭାବ

**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**

*ପିଲାମାନଙ୍କ ଶାରୀରିକ, ମାନସିକ ଓ ସାମାଜିକ ସ୍ୱାସ୍ଥ୍ୟକୁ ବିପନ୍ନ କରିବାରେ ଖଳନାୟକ ସାଜିଛି ଗଣମାଧ୍ୟମ । ଗଣମାଧ୍ୟମ ନିଜ ଆଭିମୁଖ୍ୟରେ ପରିବର୍ତ୍ତନ ନ କଲେ ଏହାର ପରିଣତି ଆଦୌ ଶୁଭଙ୍କର ହେବ ନାହିଁ ।*

ଏହା ହେଉଛି ସଂଚ଼ାରର ଯୁଗ । ଟେଲିଭିଜନ, ସଙ୍ଗୀତ ଭିଡିଓ, ଭିଡିଓଗେମ୍, ଇଣ୍ଟର୍‌ନେଟ୍ ଏବଂ ସମ୍ବାଦପତ୍ର ଇତ୍ୟାଦି ଗଦେଇ ଚାଲିଛନ୍ତି ଭଳିକିଭଳି ତଥ୍ୟ ଓ ମନୋରଞ୍ଜନ ଧର୍ମୀ କାର୍ଯ୍ୟକ୍ରମ । କିନ୍ତୁ ଏଗୁଡ଼ିକ ଆମ ପିଲାମାନଙ୍କର ଆଚ଼ରଣ ଓ ମନୋଭାବକୁ କେଉଁ ପ୍ରକାରରେ ପ୍ରଭାବିତ କରିଚାଲିଛି ? ସେମାନଙ୍କ ବିକାଶ କ୍ଷେତ୍ରରେ ଗଣମାଧ୍ୟମର ଭୂମିକା ଅନୁକୂଳ ନା ପ୍ରତିକୂଳ ?

ପିଲାମାନଙ୍କର ମନୋସାମାଜିକ ବିକାଶ ଉପରେ ଗଣମାଧ୍ୟମର ଭୂମିକା ସୁଦୂରପ୍ରସାରୀ । ଏ ସମ୍ପର୍କରେ ପିତାମାତା ଓ ଚିକିତ୍ସକମାନଙ୍କର ଯଥେଷ୍ଟ ଧାରଣା ରହିଥିଲେ ସେମାନେ ନିଜ ନିଜ ଭିତରେ ଭାବର ଆଦାନପ୍ରଦାନ କରି ପିଲାମାନଙ୍କୁ ଉଚିତ ମାର୍ଗଦର୍ଶନ କରିପାରିବେ ।

ଆମ ପିଲାମାନେ ଯେଉଁ ମାଧ୍ୟମଗୁଡ଼ିକର ସଂସ୍ପର୍ଶରେ ଆସୁଛନ୍ତି ସେଗୁଡ଼ିକ ହେଲା – ୧. ଟେଲିଭିଜନ ୨. ସଙ୍ଗୀତ ଭିଡିଓ ୩. ଭିଡିଓ ଗେମ୍ ୪. ଇଣ୍ଟର୍‌ନେଟ୍ ୫. ସମ୍ବାଦପତ୍ର ଓ ପତ୍ରପତ୍ରିକା ୬. ବିଜ୍ଞାପନ ସମ୍ବଳିତ ହୋର୍ଡିଂ ।

ରେଡ଼ିଓ ଏକ ବଳିଷ୍ଠ ମାଧ୍ୟମ ହୋଇଥିଲେ ମଧ୍ୟ ଏହା ସରକାରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ ହେଉଥିବାରୁ ଏହା ବାଟବଣା ହୋଇ ଅହିତ ସାଧନ କରିବାର ଆଶଙ୍କା ଅପେକ୍ଷାକୃତ ଊଣା ।

ପିଲାମାନଙ୍କର ରହିଛି ଏକ ଅସାଧାରଣ ଦକ୍ଷତା । ସେମାନେ ମାତ୍ର ଅଳ୍ପ କେଇ ସେକେଣ୍ଡ୍ ଭିତରେ କୌଣସି ସିନେମା କିମ୍ବା ଟେଲିଭିଜନ୍‌ର ନାୟକ/ନାୟିକାଙ୍କୁ ଅବିକଳ ଅନୁକରଣ କରିପାରନ୍ତି । ଲୋକପ୍ରିୟ ମଦର ନାଁ କହିଦେଇପାରନ୍ତି ବିଜ୍ଞାପନ ଦେଖି । ଯୌନଉଦ୍ଦୀପକ ଭଙ୍ଗୀ ପ୍ରଦର୍ଶନ କରିପାରିବା ସଙ୍ଗେ ସଙ୍ଗେ କରିପାରନ୍ତି ଲଢ଼େଇଖେଳ ।

ଗଣମାଧ୍ୟମ ଆମର ମନୋରଞ୍ଜନ କରିଥାଏ । ସଂସ୍କୃତି ସମ୍ବନ୍ଧରେ ଅବଗତ କରାଏ । ଶିକ୍ଷଣୀୟ ତଥ୍ୟ ପ୍ରଦାନ କରେ । ପରିବେଷଣ କରେ କ୍ରୀଡ଼ା ଏବଂ ଅନ୍ୟାନ୍ୟ ସମ୍ବାଦ ।



ତେଣୁ ଏହା ଆମ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଏବଂ ଶିକ୍ଷାପ୍ରଦାନ କରିବାରେ ଏହାର ଭୂମିକା ଯଥେଷ୍ଟ ମହତ୍ତ୍ୱପୂର୍ଣ୍ଣ । କିନ୍ତୁ ଏମାନେ ଯାହାସବୁ ପରିବେଷଣ କରିଚାଲିଛନ୍ତି, ସେଥିରୁ ଅଧିକାଂଶ ଆମ ପିଲାମାନଙ୍କପାଇଁ ଆଦୌ ହିତକର ନୁହେଁ ।

ବର୍ତ୍ତମାନର ଯୁଗ ହେଉଛି ତଥ୍ୟ ଓ ପ୍ରଯୁକ୍ତିବିଜ୍ଞାନର ଯୁଗ । ଏବେ ସହରାଞ୍ଚଳର ଅଧିକାଂଶ ପରିବାରରେ ରହିଛି ଟେଲିଭିଜନ୍ । ଗ୍ରାମାଞ୍ଚଳରେ ମଧ୍ୟ ଏହାର ପ୍ରସାର ବୃଦ୍ଧିପାଇ ଚାଲିଛି । କିଶୋର ବୟସର ପିଲାମାନଙ୍କ ମଧ୍ୟରୁ ଅନେକ ପିଲାଙ୍କର ସିନେମା ଦେଖିବାର ଅନୁଭୂତି ଅଛି ।



ଏକ ଅଟକଳରୁ ପ୍ରକାଶ ଯେ ହାରାହାରି ଭାବରେ ଦେଖିଲେ ଆମ ଦେଶର ଜଣେ କିଶୋର/କିଶୋରୀ ପ୍ରତି ସପ୍ତାହରେ ୧୪ରୁ ୨୮ ଘଣ୍ଟାଧରି

ଟେଲିଭିଜନ କିମ୍ବା ଅନ୍ୟକୌଣସି ଗଣମାଧ୍ୟମର ସଂସ୍ପର୍ଶରେ ଆସିଥାଏ । ଏପରିକି ଅନେକ ପିଲା ପ୍ରତିଦିନ ଶ୍ରେଣୀଗୃହରେ ଯେତିକି ସମୟ ବିତେଇଥାଆନ୍ତି, ତାହାଠାରୁ ଅଧିକ ସମୟ ବିତେଇଥାଆନ୍ତି ଟେଲିଭିଜନ୍ ସାମନାରେ । ଯେଉଁ ପିଲାର ଆର୍ଥିକ ଅବସ୍ଥା ଯେତେ ସ୍ୱଚ୍ଛଳ, ସେ ସେତେ ବେଶି ସମୟ ଟିଭି. ଦେଖୁଥିବାର ଜଣାଯାଇଛି । ଦରିଦ୍ର ପରିବାରର ପିଲାମାନେ ଯେ ଟିଭି. ଦେଖାରୁ ସମ୍ପୂର୍ଣ୍ଣ ବଞ୍ଚିତ, ତାହା ମଧ ନୁହେଁ । ବରଂ କୁହାଯାଉଛି ଯେ ଆଜିକାର କିଶୋରକିଶୋରୀମାନଙ୍କପାଇଁ ଟେଲିଭିଜନ ହିଁ ହୋଇଛି 'ପ୍ରକୃତ ପୃଥିବୀ' ।

## ଗଣମାଧ୍ୟମର ପ୍ରଭାବ

ଗଣମାଧ୍ୟମର ପ୍ରଭାବ ବିବିଧ । କିଶୋରକିଶୋରୀମାନଙ୍କଠାରେ ଏହାର କେତେକ ପ୍ରଭାବ ବେଶ୍ ଅନୁକୂଳ ତ ଅନ୍ୟକେତେକ ପ୍ରଭାବ ଅତୀବ ପ୍ରତିକୂଳ ।

(କ) **ଶିକ୍ଷାଗ୍ରହଣ** – ଟେଲିଭିଜନ୍ ହେଉଛି ଏକ ପ୍ରଭାବଶାଳୀ ଶିକ୍ଷକ । ଏହାର ଅନେକ କାର୍ଯ୍ୟକ୍ରମ ଚିନ୍ତାଧାରାକୁ ପ୍ରସାରିତ କରିବାରେ ସହାୟକ । କୁଇଜ୍, ୟୁଜିସି ଶିକ୍ଷାଦାନ, ବିଜ୍ଞାନଭିତ୍ତିକ କାର୍ଯ୍ୟକ୍ରମ ଇତ୍ୟାଦିର ପ୍ରଭାବ ଖୁବ୍ ସ୍ୱାଗତଯୋଗ୍ୟ । କିନ୍ତୁ କେଇଜଣ କିଶୋରକିଶୋରୀ ଏହିଭଳି କାର୍ଯ୍ୟକ୍ରମର ସଦୁପଯୋଗ କରୁଛନ୍ତି ?

(ଖ) **ପୁଷ୍ଟି** – ଟେଲିଭିଜନ ଦେଖିବାର ଅଭ୍ୟାସ ଫଳରେ ପିଲାମାନେ ଆଉ ଖେଳପଡ଼ିଆକୁ ଯାଉ ନାହାନ୍ତି । ନାଁ ଧରୁ ନାହାନ୍ତି ବ୍ୟାୟାମ କରିବାର । ଫଳରେ ସେମାନଙ୍କ ଶରୀରରେ ଜମିଚାଲିଛି ଚର୍ବି । ଟେଲିଭିଜନ୍ ଦେଖିବାପାଇଁ ଘଣ୍ଟାଘଣ୍ଟାଧରି ସେମାନେ ବସିରହୁଛନ୍ତି ଟିଭି ସାମନାରେ । ଏହି ଅବସରରେ ପାଟିରେ ପକେଇ ଚାଲୁଛନ୍ତି ନାନାପ୍ରକାରର ଫାଷ୍ଟ୍ ଫୁଡ୍ । ପିଇଚାଲିଛନ୍ତି ବୋତଲ ପରେ ବୋତଲ କୋଲ୍ଡ ଡ୍ରିଙ୍କ୍ । ଅଧିକ କାଲୋରୀବିଶିଷ୍ଟ ଛଣାଛଣି ଓ ଭଜାଭଜି ହୋଇଥିବା ଖାଦ୍ୟ ଖାଇ ଚାଲିବା ଫଳରେ ସେମାନଙ୍କ ଗୋଷ୍ଠୀରେ ବୃଦ୍ଧିପାଇଚାଲିଛି ପୃଥୁଳତାର ହାର । ଏପରିକି ପିଲାମାନଙ୍କ ରକ୍ତରେ ମଧ ଗ୍ଲୁକୋଜ୍ ଓ କୋଲିଷ୍ଟିରଲ୍‌ର ମାତ୍ରା ଅଧିକ ରହୁଥିବାର ପରିଲକ୍ଷିତ ହେଲାଣି ।

ଟେଲିଭିଜନ୍‌ରେ ପ୍ରସାରିତ ଫାଷ୍ଟ ଫୁଡ୍ / ଜଙ୍କ୍ ଫୁଡ୍ ଓ ଶୀତଳ ପାନୀୟର ବିଜ୍ଞାପନ ଦେଖି ସେଗୁଡ଼ିକର ମଜା ନେବାପାଇଁ ସେମାନେ ପ୍ରଲୁବ୍ଧ ହୋଇଉଠୁଛନ୍ତି । ପାଣି ପିଇବା ଛାଡ଼ି ଶୀତଳ ପାନୀୟ ପିଇବା ହୋଇପଡ଼ିଲାଣି ସେମାନଙ୍କପାଇଁ ବର୍ତ୍ତମାନର ଫେସନ୍ ।

(ଗ) **ଆହାର ବିକୃତି** – ଗତ ୫୦ ବର୍ଷ ଭିତରେ କିଶୋରୀମାନଙ୍କ ଗୋଷ୍ଠୀରେ ଆଶାତୀତ ଭାବରେ ବୃଦ୍ଧିପାଇଯାଇଛି ଆହାର ବିକୃତି ସଂପର୍କିତ ବ୍ୟାଧି ।

ଟେଲିଭିଜନରେ ଆକର୍ଷଣୀୟ ତନୁପାତଳୀ ଝିଅମାନଙ୍କୁ ଓ ମଡେଲ୍‌ମାନଙ୍କୁ ଦେଖି ସେମାନଙ୍କୁ ଅନୁକରଣ କରିବାପାଇଁ ସେମାନେ ଆଗ୍ରହୀ ହୋଇପଡୁଛନ୍ତି । ଫଳରେ ନିଜର ଦୈନନ୍ଦିନ ଅନୁମୋଦିତ ଖାଦ୍ୟପରିମାଣକୁ ଅସ୍ୱାଭାବିକ ଭାବରେ କମେଇ ଚାଲିଛନ୍ତି ସେମାନେ । ଶରୀରର ଓଜନ ହ୍ରାସ କରିବା ନିମନ୍ତେ ଉପବାସ ରହିବା ନିମନ୍ତେ ଶ୍ରେୟସ୍କର ମଣୁଛନ୍ତି । କେହି କେହି ପେଟପୂରେଇ ତଣ୍ଟିଯାଏଁ ଖାଇସାରିବା ପରେ ତଣ୍ଟିପାଖରେ ଆଙ୍ଗୁଠି ଘଷି ବାନ୍ତି କରିପକାଉଛି ଖାଦ୍ୟକୁ । ଏ'ସବୁ କରୁଛନ୍ତି ଜାଣିଶୁଣି ।

ନିଜ ଶରୀରର ଓଜନ, ଆକାର, ଆକୃତି, ଚେହେରା ଇତ୍ୟାଦିକୁ ଟେଲିଭିଜନ୍‌ରେ ବିଜ୍ଞାପିତ ତଥା ପ୍ରସାରିତ ମଡେଲ୍‌ର ଅନୁକରଣରେ ରଖିବାପାଇଁ ଏଇ ଯେଉଁ କୁଶିକ୍ଷା ଟେଲିଭିଜନ୍‌ରୁ ସେମାନେ ପାଉଛନ୍ତି, ତାହା ସେମାନଙ୍କର କୌଣସି ମଙ୍ଗଳ କରେ ନାହିଁ । କରେ କେବଳ ହିଁ ଅମଙ୍ଗଳ ।

(ଘ) **ମଦ୍ୟପାନ, ଧୂମପାନ ଓ ଆସକ୍ତିସୃଷ୍ଟିକାରୀ ଔଷଧ ସେବନ** – ଆଗେ ସିଗାରେଟ୍ ଟାଣିବା, ପାନ ଖାଇବା, ମଦପିଇବା ଆଦି କୁଅଭ୍ୟାସକୁ କିଶୋରକିଶୋରୀମାନେ ଶିଖୁଥିଲେ ନିଜ ସାଙ୍ଗସାଥୀମାନଙ୍କଠାରୁ ସେମାନଙ୍କ ପ୍ରରୋଚ଼ନାରେ । ଏବେ ସବୁଦିନେ ଓ ଦିନରାତିର ଅଧିକାଂଶ ସମୟରେ ଟିଭି. ଏହା ଶିଖେଇଚାଲିଛି ପିଲାମାନଙ୍କୁ । ପୁଣି ଟିଭିର ଏହି କୁଶିକ୍ଷା ଏତେ ପ୍ରଭାବୀ ଯେ ପିତାମାତା ଓ ଶିକ୍ଷକଶିକ୍ଷିକାମାନଙ୍କ ସୁପରାମର୍ଶ ପିଲାମାନଙ୍କୁ ଏଥିରୁ ନିବୃତ୍ତ କରିବାରେ ବିଫଳ ହେଉଛି । ଏପରିକି ପୁଅପିଲାମାନଙ୍କର ଯୁକ୍ତି ଯେ ମଦପିଇବା, ସିଗାରେଟ୍ ଖାଇବା, ଆସକ୍ତି ସୃଷ୍ଟିକାରୀ ବଟିକା ଖାଇବା ହେଉଛି ପୌରୁଷର ଲକ୍ଷଣ ଓ କିଶୋରସୁଲଭ ଆଚ଼ରଣ !

ସେମାନଙ୍କ ଆଦର୍ଶ ତଥା ମନୋପସନ୍ଦ ସିନେମାର ନାୟକ ଯାହା ଯାହା କରୁଛନ୍ତି, ତାଙ୍କୁ ଅବିକଳ ଭାବରେ ଅନୁକରଣ କରିବାରେ ଲାଗିପଡ଼ିଛନ୍ତି ଆମ ପିଲାମାନେ । ତେଣୁ ସିନେମାର ନାୟକମାନେ କୌଣସି ଦୃଶ୍ୟରେ ସିଗାରେଟ୍ ନ ପିଇବା କି ମଦ ନ ଖାଇବାପାଇଁ ଜନମତ ସୃଷ୍ଟି ହେଲାଣି ।

(ଙ) **ଶରୀରର ବାହ୍ୟାକୃତି ପ୍ରତି ଗୁରୁତ୍ୱ ଓ ଲିଙ୍ଗୀୟ ସଚ଼େତନତା** – ଅତି ପିଲାବୟସରୁ ସନ୍ତାନସନ୍ତତିମାନେ ନିଜ ଚେହେରା ପ୍ରତି ସଚେତନ । ସେମାନଙ୍କଠାରେ ମଧ୍ୟ ପ୍ରକାଶପାଏ ଲିଙ୍ଗୀୟ ସଚେତନତା । ପୁଅମାନେ ନିଜକୁ ପୁଅଭଳି ଓ ଝିଅମାନେ ନିଜକୁ ଝିଅଭଳି ଅନୁଭବ କରିଥାନ୍ତି ଓ ସେହିପ୍ରକାରେ ନିଜ ଚେହେରାକୁ ସଜେଇ ଅଧିକ ଆକର୍ଷଣୀୟ ହେବାପାଇଁ ଉଦ୍ୟମ କରିଥାନ୍ତି ।

ବିଶେଷକରି ସମବୟସ୍କ ବିପରୀତଲିଙ୍ଗୀଙ୍କୁ ନିଜଆଡ଼କୁ ଆକର୍ଷିତ କରବା ନିମନ୍ତେ ଏହି ପ୍ରୟାସ । କିଶୋରକିଶୋରୀମାନେ ଟେଲିଭିଜନରୁ ଏ ସମ୍ପର୍କରେ ଅନେକ ତଥ୍ୟ ଆହରଣ କରିନେଉଛନ୍ତି ଓ ତା'କୁ ଅନୁକରଣ କରି ପ୍ରୟୋଗ କରିଚାଲିଛନ୍ତି ନିଜ ଉପରେ । କିଶୋରମାନେ ଅଧିକ ବଳିଷ୍ଠ ଦେଖାଯିବା ଓ କିଶୋରୀମାନେ କ୍ଷୀଣାଙ୍ଗୀ ହେବା ହୋଇଛି ଆଦର୍ଶ । ଏଥିରେ ଟିଭି ସାଜିଛି ଶିକ୍ଷକ । କିନ୍ତୁ କିଶୋରୀଟି ଆକର୍ଷଣୀୟା କି ନା ତା'ର ମୂଲ୍ୟାୟନ କରୁଛି କିଶୋର ଏବଂ କିଶୋରଟି ଆକର୍ଷଣୀୟ କି ନା, ତା'ର ମୂଲ୍ୟାୟନ କରୁଛି କିଶୋରୀ । ଏହି ଟେଲିଭିଜନ୍-ସଂସ୍କୃତି ହିଁ ଏବକାର ଅନେକ ଅସାମାଜିକ ଆଚରଣର କର୍ତ୍ତା ।

(ଚ) **ହିଂସାତ୍ମକ ଆଚରଣ** – ଟେଲିଭିଜନ୍‌ରେ ଏବେ ବୃଦ୍ଧି ପାଇଚାଲିଛି ହିଂସାତ୍ମକ ଦୃଶ୍ୟଗୁଡ଼ିକର ପ୍ରଦର୍ଶନ । ଏକ ଅନୁଧାନ ଅନୁଯାୟୀ ପିଲାମାନେ ପ୍ରତିବର୍ଷ ଟେଲିଭିଜନ ପରଦାରେ ଅନ୍ତତଃ ୧୦,୦୦୦ ସଂଖ୍ୟକ ହିଂସାତ୍ମକ ଦୃଶ୍ୟ ଦେଖିବାକୁ ପାଉଛନ୍ତି । ସେହି ହିଂସାତ୍ମକ ଦୃଶ୍ୟଗୁଡ଼ିକରେ ମଧ ପ୍ରଦର୍ଶିତ ହେଉଛି ହତ୍ୟା ଓ ଧର୍ଷଣ । ୧୦୦୦ରୁ ଅଧିକ ସଂଖ୍ୟକ ବୈଜ୍ଞାନିକ ଅନୁଧାନରୁ ପ୍ରମାଣ ମିଳିଛି ଯେ ଟେଲିଭିଜନ୍‌ରେ ପ୍ରଦର୍ଶିତ ହିଂସାତ୍ମକ ଦୃଶ୍ୟଗୁଡ଼ିକ ଆକ୍ରମଣାତ୍ମକ ତଥା ହିଂସାତ୍ମକ ଆଚରଣକୁ ପ୍ରୋତ୍ସାହନ ଦେଇଥାଏ । ବିଶେଷକରି କିଶୋରମାନଙ୍କୁ ଏହା ଅଧିକ ଭାବରେ ପ୍ରଭାବିତ କରିଚାଲିଛି ।

ଏକ ହିସାବରୁ ପ୍ରକାଶ ଯେ ପିଲାମାନେ ୧୮ ବର୍ଷ ବୟସରେ ପହଞ୍ଚିବା ବେଳକୁ ସେମାନଙ୍କ ଭିତରୁ ଅନେକେ କେବଳ ଟେଲିଭିଜନରୁ ୨,୦୦,୦୦୦ ସଂଖ୍ୟକ ହିଂସାତ୍ମକ ଦୃଶ୍ୟ ଦେଖିସାରିଥାନ୍ତି । ପୁଣି ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ବ୍ୟକ୍ତି-ବ୍ୟକ୍ତି ମଧ୍ୟରେ ବିବାଦ ସମ୍ବଳିତ । ତେଣୁ ସେହି ଦୃଶ୍ୟମାନ ଦେଖି ପିଲାମାନେ ଧରିନେଉଛନ୍ତି ଯେ କୌଣସି ସମସ୍ୟାର ସମାଧାନ କିମ୍ବା କୌଣସି ଉଦ୍ଦେଶ୍ୟ ସାଧନପାଇଁ ହିଂସା ତଥା ଆକ୍ରମଣାତ୍ମକ ପନ୍ଥା ହେଉଛି ପ୍ରକୃଷ୍ଟ, ସହଜ ଓ ଫଳପ୍ରଦ । ଏପରିକି ନିଜ ପକେଟ୍‌ରେ ମାରଣାସ୍ତ୍ର ରଖି ବୁଲିବାର ଶିକ୍ଷା ମଧ ମିଳୁଛି ସେହି ଟେଲିଭିଜନ୍ ପରଦାରୁ ।

ସଂପ୍ରତି ସ୍କୁଲ୍‌ରେ ପଢୁଥିବା ପିଲା ନିଜର ସହପାଠୀକୁ ଛୁରୀ ଭୁସି ହତ୍ୟାକରିବା, ସ୍କୁଲ୍‌ରେ ଅବିଚାରିତ ଭାବରେ ଗୁଳିଚଳେଇ ଅନ୍ୟ ଛାତ୍ର ଓ ଶିକ୍ଷକମାନଙ୍କୁ ହତାହତ କରିବାର ଉଦାହରଣମାନ ଖବରକାଗଜରେ ପଢ଼ିବାକୁ ମିଳୁଛି । ଦିନ ଥିଲା, ଆମେ ଏପରି ଘଟଣାଗୁଡ଼ିକୁ ପାଶ୍ଚାତ୍ୟ ଦେଶର ବିଲକ୍ଷଣ ବୋଲି କହି ଆତ୍ମସନ୍ତୋଷ ଲାଭ କରୁଥିଲୁ । କିନ୍ତୁ, ଏଭଳି ଘଟଣାମାନ ଆମ ଦେଶରେ ମଧ ଘଟିଚାଲିଛି ।

ହିଂସାତ୍ମକ ଦୃଶ୍ୟମାନ ଟେଲିଭିଜନ୍‌ରୁ ଦେଖି ଦେଖି ପିଲାମାନଙ୍କଠାରେ ପ୍ରକାଶ ପାଇଲାଣି ଉତ୍କଣ୍ଠା, ବିଷାଦ, ଅନିଦ୍ରା, ଦୁଃସ୍ୱପ୍ନ ଓ ଅସ୍ୱାଭାବିକ ମାନସିକ ଚାପଜନିତ ବିକୃତି ଭଳି ଆବେଗ ସମ୍ପର୍କିତ ଲକ୍ଷଣମାନ । ହତ୍ୟା, ଆତ୍ମହତ୍ୟା, ଦୁର୍ଘଟଣା ପ୍ରବଣତା ଆଦିର ହାର କିଶୋରକିଶୋରୀ ଗୋଷ୍ଠୀରେ ଯେ ବୃଦ୍ଧିପାଇଚାଲିଛି, ଏଥିପାଇଁ ଅନେକାଂଶରେ ଦାୟୀ ହେଉଛି ଟେଲିଭିଜନ୍ ।

ପୁଣି କମ୍ପ୍ୟୁଟର ଗେମ୍‌ସରୁ ମଧ୍ୟ ସେମାନେ ଶିଖିନେଉଛନ୍ତି ହିଂସାତ୍ମକ କାଣ୍ଡ ଘଟେଇବାର କଳା । ଏବେ ଭିଡିଓ ଗେମ୍‌ସ ପ୍ରତି ଅନେକ କିଶୋର ଆସକ୍ତ । ଭିଡିଓ ଗେମ୍‌ସ ମାଧ୍ୟମରେ ବାରମ୍ବାର ହିଂସାତ୍ମକ ଦୃଶ୍ୟର ଅଭ୍ୟାସ କରି କରି ସେମାନେ ଏହାର କୌଶଳ ହାସଲ କରିନେଉଛନ୍ତି ଓ ନିଜ ଉପରେ ନିୟନ୍ତ୍ରଣ ହରେଇ ଖୁବ୍ କୁଶଳତାର ସହ ପ୍ରୟୋଗ କରିପାରୁଛନ୍ତି ବାସ୍ତବ କ୍ଷେତ୍ରରେ ।

**(ଛ) ଯୌନତା ସମ୍ପର୍କିତ ଆଚରଣ** – ଏବକାର ପିଲାମାନେ ଅତି ଅଳ୍ପ ବୟସରୁ ଯୌନ ସଚେତନ ହୋଇଉଠିଲେଣି । ଏପରିକି ନଅଦଶବର୍ଷ ବୟସରେ ଝିଅମାନେ ହୋଇପଡ଼ିଲେଣି ଘରଯୋଗ୍ୟା । ସେମାନଙ୍କଠାରେ ଏହି ସଅଳ ଋତୁଚକ୍ର ଆରମ୍ଭର ପଶ୍ଚାତ୍‌ରେ ଟିଭି ଓ ଯୌନଉଦ୍ଦୀପକ ବିଜ୍ଞାପନ, ସଙ୍ଗୀତ ଓ ସିନେମା ତଥା ପତ୍ରପତ୍ରିକାରେ ପ୍ରକାଶିତ ଯୌନତା ସମ୍ପର୍କିତ ଲେଖାମାନ ଓ ଛବିମାନ ଦାୟୀବୋଲି କୁହାଯାଉଛି ।

ଫଳରେ ଅପ୍ରାପ୍ତବୟସ୍କ କିଶୋରକିଶୋରୀମାନେ ଯୌନସମ୍ପର୍କ ରଖିବାଟାକୁ ଅସାମାଜିକ କି ଅପରାଧ ବୋଲି ନ ବିଚାରି ସେଥିପ୍ରତି ପ୍ରଲୁବ୍ଧ ହୋଇଉଠୁଛନ୍ତି । ସୁତରାଂ ଏବେ ବଢ଼ିଚାଲିଛି ଅବୈଧ ଗର୍ଭ, ଅବିବାହିତା ମାଆ, ଗର୍ଭପାତ, ଯୌନ ସଂସର୍ଗଜାତ ବ୍ୟାଧି ଇତ୍ୟାଦିର ହାର । ହାରାହାରି ଭାବରେ ଦେଖିଲେ ପାଖାପାଖି ଦୁଇତୃତୀୟାଂଶ ଟି.ଭି. କାର୍ଯ୍ୟକ୍ରମରେ ସ୍ଥାନପାଇଛି ଯୌନତାସମ୍ପର୍କିତ ବିଷୟବସ୍ତୁ ତଥା ଦୃଶ୍ୟ । ଏହା କିଶୋରକିଶୋରୀମାନଙ୍କ ମାନସିକତାକୁ କଳୁଷିତ କରିଚାଲିଛି ।

ଅନୁଧ୍ୟାନରୁ ପ୍ରକାଶ ଯେ କିଶୋରକିଶୋରୀମାନେ ଯୌନଉଦ୍ଦୀପକ ଦୃଶ୍ୟଗୁଡ଼ିକୁ ଗଣମାଧ୍ୟମରେ ଦେଖିବା ଓ ଯୌନ ଆଚରଣରେ ବ୍ରତୀହେବା ଭିତରେ ପ୍ରତ୍ୟକ୍ଷ ସମ୍ପର୍କ ରହିଛି ।

## ଶରୀର ଉପରେ ଗଣମାଧ୍ୟମର ପ୍ରତିକୂଳ ପ୍ରଭାବ

ଟେଲିଭିଜନ୍, ଭିଡିଓ, କମ୍ପ୍ୟୁଟର ଭଳି ମାଧ୍ୟମଗୁଡ଼ିକ ଦର୍ଶକର ଶରୀର ଉପରେ କେତେକ ପ୍ରତିକୂଳ ପ୍ରଭାବ ପକାଇଥାଏ ।

* ବହୁସମୟଧରି ଟେଲିଭିଜନ୍, ଭିଡ଼ିଓ କି କମ୍ପ୍ୟୁଟର୍ ପରଦାକୁ ଚାହିଁଲେ ଆଖି ଦୁଇଟି ଉପରେ ଚାପପଡ଼ି ଚକ୍ଷୁଦୋଷ ଜାତ ହୁଏ ।
* କମ୍ପ୍ୟୁଟର୍‌ର କି ବୋର୍ଡରେ ବାରମ୍ବାର କି' ଚିପିବା ଫଳରେ ହାତ ଓ ଆଙ୍ଗୁଠି ଉପରେ ଚାପପଡ଼ି ଯନ୍ତ୍ରଣା ଜାତ ହୋଇପାରେ ।
* ଏକ ନିର୍ଦ୍ଦିଷ୍ଟ ଭଙ୍ଗୀରେ ବସିବା ଫଳରେ ବେକମୂଳ ଓ ଅଣ୍ଟାରେ ବ୍ୟଥା ହୁଏ ।
* ଟିଭି ଓ କମ୍ପ୍ୟୁଟର୍‌ରୁ ଉଦ୍ଗିରିତ ବିଦ୍ୟୁତ୍-ଚୁମ୍ବକୀୟ ବିକିରଣ ଶରୀରର ଯେଉଁ କ୍ଷତି କରିଥାଏ, ତା'ର ଆକଳନ ସମ୍ଭବ ହେଉ ନ ଥିଲେ, ମଧ୍ୟ ଏହାର ପ୍ରଭାବ ଯେ ବେଶ୍ ପ୍ରତିକୂଳ, ଏଥିରେ ସନ୍ଦେହ ନାହିଁ ।

## ଇଣ୍ଟର୍‌ନେଟ୍ : ଏକ ଅଭିନବ ମାଧ୍ୟମର ଅଭ୍ୟୁଦୟ

ନିଜ ସନ୍ତାନମାନଙ୍କର କମ୍ପ୍ୟୁଟର୍ ଓ ଇଣ୍ଟର୍‌ନେଟ୍ ବ୍ୟବହାର କରିବାର ସାମର୍ଥ୍ୟଦେଖି ପିତାମାତା ବିସ୍ମିତ ହୋଇପଡୁଥିବେ । ସେମାନେ ଏହାକୁ ପସନ୍ଦ କରନ୍ତୁ କି ନ କରନ୍ତୁ, ଇଣ୍ଟରନେଟ୍ ଏବେ ଏକ ନୂତନ ସାକ୍ଷରତାର ଅତ୍ୟାବଶ୍ୟକ ଅଙ୍ଗ ପାଲଟିଯାଇଛି । ଇଣ୍ଟର୍‌ନେଟ୍‌ର ଉପଯୋଗିତାର ଅନ୍ତ ନାହିଁ । କିନ୍ତୁ ଏଥିରେ ମଧ୍ୟ ଅନ୍ତର୍ନିହିତ ହୋଇରହିଛି ଅସୁମାରି ଅନିୟନ୍ତ୍ରିତ ବିବିଧ ବିପଦ । ତେଣୁ ପିତାମାତାମାନେ ଇଣ୍ଟର୍‌ନେଟ୍‌ର ଅପବ୍ୟବହାର ବିଷୟରେ ଅବଗତ ହୋଇ ନିଜ ସନ୍ତାନସନ୍ତତିମାନଙ୍କୁ ତା' କବଳରୁ ସୁରକ୍ଷିତ ରଖିବା ଅପରିହାର୍ଯ୍ୟ ହୋଇପଡ଼ିଲାଣି । ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ଇଣ୍ଟର୍‌ନେଟ୍ ଯୋଗାଇଦେଇପାରୁଛି ଅଗଣିତ ଶିକ୍ଷଣୀୟ ତଥ୍ୟ । ବରଂ ଏହା ଏକ ବିରାଟ ଘରୋଇ ପାଠାଗାରସହ ତୁଳନୀୟ । ତଥାପି ଇଣ୍ଟର୍‌ନେଟ୍‌ର ବ୍ୟବହାର ଏବେ ଏକ ଆସକ୍ତିରେ ପରିଣତ ହୋଇଗଲାଣି । ସତେ ଯେପରି ଏହା ଗିଳି ଚାଲିଛି ଉପଭୋକ୍ତାର ମହାର୍ଘ ସମୟକୁ । ବ୍ୟବହାରକାରୀଠାରେ ପୃଥୁଳତା ଓ ଅଙ୍ଗଭଙ୍ଗୀ ସମ୍ପର୍କିତ ସମସ୍ୟାର କାରଣରୂପେ ଉଭା ହୋଇପଡ଼ିଲାଣି ଏ' । ପୁଣି ଇଣ୍ଟର୍‌ନେଟ୍‌ରେ ମଜି ରହିବା ଫଳରେ ବ୍ୟବହାରକାରୀ ପାଲଟିଯାଉଛି ଅସାମାଜିକ । ଅନେକ କିଶୋରକିଶୋରୀଙ୍କୁ ଯୌନତା ଦିଗରେ ବିପଥଗାମୀ କରାଇବାରେ ଏହା ସାଜିଛି ଖଳନାୟକ ।

## ଇଣ୍ଟରନେଟ୍‌ର କ୍ଷତିକାରୀ ଦିଗ

* ଇଣ୍ଟରନେଟ୍ ଏକ ପାରସ୍ପରିକ କସରତ । କହିବାକୁ ଗଲେ କମ୍ପ୍ୟୁଟର ମାଧ୍ୟମରେ ବ୍ୟବହାରକାରୀ ସହ ପରୋକ୍ଷ ବାର୍ତ୍ତା ଆଦାନପ୍ରଦାନ ସହ ଏହା ତୁଳନୀୟ । ତେଣୁ ଥରେ ଇଣ୍ଟର୍‌ନେଟ୍ ଖୋଲିଲେ ସେଥିରୁ ବିରତ ହେବା ବ୍ୟବହାରକାରୀଙ୍କ ପକ୍ଷେ ସହଜ ହେଉ ନାହିଁ । ଫଳରେ ବଢ଼ିଚାଲିଛି ସମୟର ଅପଚୟ । ତେଣୁ ଏହାକୁ ଏବେ 'ଇଣ୍ଟରନେଟ୍ ଆସକ୍ତି' ଭାବରେ ଅଭିହିତ କରାଗଲାଣି ।
* ଇଣ୍ଟର୍‌ନେଟ୍ ଆସକ୍ତି କିଶୋରକିଶୋରୀମାନଙ୍କ ସ୍ୱାସ୍ଥ୍ୟ ଉପରେ ପକେଇଚାଲିଛି ପ୍ରତିକୂଳ ପ୍ରଭାବ ।
* ଇଣ୍ଟର୍‌ନେଟ୍ ସହ ସମ୍ପୃକ୍ତ ରହିବା ଫଳରେ କିଶୋରକିଶୋରୀମାନେ ପିତାମାତା, ଭାଇଭଉଣୀ, ପରିବାରର ଅନ୍ୟ ସଦସ୍ୟ, ବନ୍ଧୁବାନ୍ଧବ ଓ ସାଥୀମାନଙ୍କ ସହ ସାମାଜିକ ସମ୍ପର୍କ ରକ୍ଷା କରିବାପାଇଁ ସମୟ ପାଉ ନାହାନ୍ତି କି ଏହାର ଆବଶ୍ୟକତା ତଥା ଉପଯୋଗିତାକୁ ହୃଦୟଙ୍ଗମ କରିପାରୁ ନାହାନ୍ତି ।
* ଇଣ୍ଟର୍‌ନେଟ୍ ମାଧ୍ୟମରେ କିଶୋରକିଶୋରୀମାନେ ପରସ୍ପରସହ ଅଶ୍ଳୀଳ ସମ୍ପର୍କ ସ୍ଥାପନ କରିବା ଓ ଏଥିପାଇଁ ବିପଦରେ ପଡ଼ିବାର ଦୃଷ୍ଟାନ୍ତ ବୃଦ୍ଧି ପାଇବାରେ ଲାଗିଛି ।
* ଏହାର ଅତ୍ୟଧିକ ବ୍ୟବହାର ଫଳରେ ଶାରୀରିକ ପରିଶ୍ରମ ଓ ବ୍ୟାୟାମପାଇଁ ସମୟ ମିଳୁ ନାହିଁ । ଫଳରେ ପ୍ରୋତ୍ସାହନ ପାଇଯାଉଛି ପୃଥୁଳତା ।

## ସନ୍ତାନମାନଙ୍କ ଟେଲିଭିଜନ ଦେଖିବା ସମ୍ପର୍କରେ ପିତାମାତାମାନଙ୍କୁ ପରାମର୍ଶ

* ଆପଣଙ୍କ ସନ୍ତାନ କେଉଁ କାର୍ଯ୍ୟକ୍ରମ ପ୍ରତି ଆଗ୍ରହୀ ସେ ସମ୍ପର୍କରେ ନିଘା ରଖନ୍ତୁ ।
* ଆପଣଙ୍କ ଅନୁପସ୍ଥିତିରେ ପିଲାମାନଙ୍କୁ ଟେଲିଭିଜନ୍ ଦେଖିବା, ଭିଡିଓ ଦେଖିବା କି ଭିଡିଓଗେମ୍‌ସ ଖେଳିବାପାଇଁ ଅନୁମତି ଦିଅନ୍ତୁ ନାହିଁ ।
* ସ୍କୁଲ୍‌କୁ ଯିବାପୂର୍ବରୁ କି ଘରପଢ଼ା ନ ସାରି ଟେଲିଭିଜନ ଦେଖିବାପାଇଁ ମନା କରନ୍ତୁ ।
* ପିଲାମାନଙ୍କ ପଢ଼ାଘରେ ଏବଂ ଶୋଇବାଘରେ ଟେଲିଭିଜନ୍ କି ଭିଡିଓପ୍ଲେୟର୍ ରଖନ୍ତୁ ନାହିଁ ।
* ଖାଇବା ସମୟରେ ଟିଭି ଏବଂ ଭିଡିଓ ପ୍ଲେୟର୍‌ର ସୁଇଚ୍ 'ଅଫ୍' କରିଦିଅନ୍ତୁ ।
* ପିଲାମାନଙ୍କପାଇଁ ଶିକ୍ଷଣୀୟ ହୋଇଥିବା ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଦେଖିବାପାଇଁ ପିଲାମାନଙ୍କୁ ଉତ୍ସାହିତ କରନ୍ତୁ ଓ ସେତେବେଳେ ଟିଭିକୁ 'ଅନ୍' କରିରଖନ୍ତୁ ।
* ପିଲାମାନେ ସହଜରେ ପହଞ୍ଚିପାରୁଥିବା ଓ ସହଜରେ ଦେଖିପାରୁଥିବା ସ୍ଥାନରେ ଟିଭିକୁ ରଖନ୍ତୁ ନାହିଁ ।

* ପିଲା ଯେଉଁ କାର୍ଯ୍ୟକ୍ରମଟି ଦେଖିବାପ୍ରତି ବେଶି ଲାଳାୟିତ, ନିଜେ ସେହି କାର୍ଯ୍ୟକ୍ରମଟିକୁ ଦେଖନ୍ତୁ । ଏହା ସେମାନଙ୍କ ପ୍ରତି ହିତକର ହୋଇଥିଲେ ଦେଖିବାପାଇଁ ଅନୁମତି ଦିଅନ୍ତୁ, ନୋହିଲେ ନାହିଁ ।
* ଟେଲିଭିଜନ ଦେଖିଲାବେଳେ ପିଲାମାନଙ୍କ ପାଖରେ ବସିରହି କାର୍ଯ୍ୟକ୍ରମର ଗୁରୁତ୍ୱ ସମ୍ପର୍କରେ ସେମାନଙ୍କସହ ଭାବ ଆଦାନପ୍ରଦାନ କରନ୍ତୁ ।
* ଶୋଇବାକୁ ଯିବାପୂର୍ବରୁ ଆବେଗ ସୃଷ୍ଟିକାରୀ କାର୍ଯ୍ୟକ୍ରମ ଦେଖିବାପାଇଁ ଉତ୍ସାହିତ କରନ୍ତୁ ନାହିଁ । କାରଣ ଏଭଳି କାର୍ଯ୍ୟକ୍ରମ ଦେଖିଲେ ଅଧାରୁ ଛାଡ଼ି ଯାଇହେବ ନାହିଁ । ଫଳରେ ତାହା ନିଦ୍ରା ସମୟକୁ ସଙ୍କୁଚିତ କରିଦେବ ।
* ଭଡ଼ାରେ ଭିଡିଓ ମଗେଇଲେ ସେହି ଭିଡିଓ ବିଷୟରେ ଆଗେ ଅବଗତ ହୁଅନ୍ତୁ । ପିଲାମାନଙ୍କପ୍ରତି ତାହା ଅନୁକୂଳ ହୋଇଥିଲେ ହିଁ ସେଥିପାଇଁ ଅନୁମତି ଦେବେ ।
* ନିଜେ ପିଲାମାନଙ୍କପାଇଁ ଦୃଷ୍ଟାନ୍ତ ହୁଅନ୍ତୁ । ପିଲାମାନଙ୍କପାଇଁ ଲାଗୁ କରିଥିବା କଟକଣାଗୁଡ଼ିକୁ ନିଜ କ୍ଷେତ୍ରରେ ମଧ୍ୟ କାର୍ଯ୍ୟକାରୀ କରନ୍ତୁ ।
* ପ୍ରତି ସପ୍ତାହରେ ଦୁଇଦିନ 'ନୋ ଟିଭି ଡେ' ବା 'ଟେଲିଭିଜନ୍ ନ ଦେଖିବା ଦିବସ'ରୂପେ ପାଳନ କରନ୍ତୁ ଏବଂ ଏହି ନିୟମରେ ଆଦୌ ବ୍ୟତିକ୍ରମ କରନ୍ତୁନି ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ଆମ୍ଭମାନଙ୍କ ପରିବାରରୁ ଟେଲିଭିଜନ୍ ସେଟ୍‌କୁ ହଟେଇ ହେବ ନାହିଁ କି ପିଲାମାନଙ୍କୁ କମ୍ପ୍ୟୁଟର୍-ନିରକ୍ଷର ରଖିହେବ ନାହିଁ । କିନ୍ତୁ ଏହାର ସଦୁପଯୋଗ କରାଯାଇପାରିବ କିପରି ଓ କିପରି ଏହାର ବ୍ୟବହାର ଉପରେ ନିୟନ୍ତ୍ରଣ ଜାରି କରିହେବ, ସେ ସମ୍ପର୍କରେ ପିତାମାତାମାନେ ସଚେତନ ତଥା ସତର୍କ ରହିବା ବାଞ୍ଛନୀୟ ।

# ଲେଖକ ଲେଖିକାଙ୍କ ପରିଚୟ

୧. ପ୍ରଫେସର ଡାକ୍ତର ବାସୁଦେବ କର ଏମ୍.ଡି. (ଜୀବରସାୟନ)
ଅବସରପ୍ରାପ୍ତ ଅଧ୍ୟକ୍ଷ, ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ, କଟକ ।

୨. ଡାକ୍ତର କିଶୋର ଚନ୍ଦ୍ର ମହାନ୍ତି, ଏମ୍.ଏସ୍‌ସି. ଏମ୍.ଇ.ଡି.
ଆୟୁର୍ବେଦ ରତ୍ନ
ବିଜ୍ଞାନ ବିଶାରଦ, ମାଧ୍ୟମିକ ଶିକ୍ଷାପରିଷଦ, କଟକ ।

୩. ଡାକ୍ତର ସଚ୍ଚିଦାନନ୍ଦ ଶତପଥୀ, ଏମ୍.ବି.ବି.ଏସ୍., ବି.ଏ., ପି.ଜି.ଡି. ଏନ୍.ଡି.,
ସିଟି ହସ୍‌ପିଟାଲ୍, କଟକ

୪. ସ୍ୱର୍ଗତା ପ୍ରଫେସର ଡାକ୍ତର ମହାମାୟା ପଟ୍ଟନାୟକ, ଏମ୍.ଏସ୍.
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପିକା,
ସ୍ତ୍ରୀ ଓ ପ୍ରସୂତିରୋଗ ବିଭାଗ
ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ, କଟକ

୫. ଡାକ୍ତର ଯୋଗମାୟା ପଟ୍ଟନାୟକ, ଏମ୍.ଏସ୍. (ସ୍ତ୍ରୀ ଓ ପ୍ରସୂତିରୋଗ)
ଅବସରପ୍ରାପ୍ତ ଯୁଗ୍ମ ନିର୍ଦ୍ଦେଶିକା
ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ, ଓଡ଼ିଶା, ଭୁବନେଶ୍ୱର ।

୬. ଡାକ୍ତର ଦେବେନ୍ଦ୍ର ନାଥ ବିଶ୍ୱାଳ, ବି.ଭି.ଏସ୍‌ସି. ଆଣ୍ଡ୍ ଏ.ଏଚ୍.
ପଶୁ ଚିକିତ୍ସକ, ଭୁବନେଶ୍ୱର ।

୭. ଡାକ୍ତର ଅଶୋକ କୁମାର ସାହୁ, ଏମ୍.ଏସ୍.
ଶଲ୍ୟ ଚିକିତ୍ସା ବିଶେଷଜ୍ଞ, ଜଗପୁର, କଟକ

୮. ପ୍ରଫେସର ଡାକ୍ତର ଯୋଗୀନ୍ଦ୍ର ମୋହନ ସେନାପତି, ଏମ୍.ଡି. (ଶରୀର ତତ୍ତ୍ୱ)
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ଶରୀରତତ୍ତ୍ୱ ବିଭାଗ,
ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ, କଟକ ।

୯. ପ୍ରଫେସର ଡକ୍ଟର କୁଳମଣି ସାମଲ, ଏମ୍.ଏସ୍.ସି., ପିଏଚ୍.ଡି.,
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ପଦାର୍ଥବିଜ୍ଞାନ ବିଭାଗ,
ବିଶ୍ୱବିଦ୍ୟାଳୟ ଇଞ୍ଜିନିୟରିଂ କଲେଜ, ବୁର୍ଲା ।

୧୦. ସ୍ୱର୍ଗତ ପ୍ରଫେସର ଡକ୍ଟର ଗଦାଧର ମିଶ୍ର, ଏମ୍.ଏସ୍‌ସି. (ଉଦ୍ଭିଦ ବିଜ୍ଞାନ),
ଡି.ଫିଲ୍., ଡିପ୍-ଇନ୍-ଜର୍ମାନ୍,
ପୂର୍ବତନ ମୁଖ୍ୟ ଅଧ୍ୟାପକ, ଉଦ୍ଭିଦ ବିଜ୍ଞାନ ଓ ଅବସରପ୍ରାପ୍ତ ଅତିରିକ୍ତ ଶାସନ ସଚିବ,
ଶିକ୍ଷା ଏବଂ ଯୁବକଲ୍ୟାଣ ବିଭାଗ, ଓଡ଼ିଶା, ଭୁବନେଶ୍ୱର ।

୧୧. ପ୍ରଫେସର୍ ଡାକ୍ତର ନିମାଇଁ ଚରଣ ପଣ୍ଡା, ଏମ୍.ଡି. (ଜୀବରସାୟନ), ଏଫ୍.ଏ.ଆଇ.ଆଇ.ଡି., ଏଫ୍.ଏ.ଏମ୍.ଏସ୍., ଏଫ୍.ଏ.ସି.ବି.ଆଇ., ଅବସରପ୍ରାପ୍ତ ସ୍ୱାସ୍ଥ୍ୟ ନିର୍ଦ୍ଦେଶକ, ଓଡ଼ିଶା, ଭୁବନେଶ୍ୱର ।

୧୨. ପ୍ରଫେସର ଡାକ୍ତର ଗୁରୁପ୍ରସାଦ ମହାନ୍ତି, ଏଫ୍.ଆର୍.ସି.ଏସ୍., ଡିପ୍ (ୟୁ.ଏନ୍.ଷ୍ଟଡିଜ୍), ଏଫ୍.ଏ.ଆଇ.ଏସ୍. ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ଶଲ୍ୟ ଚିକିତ୍ସା ବିଭାଗ, ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ, କଟକ ।

୧୩. ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ, ଏମ୍.ଡି. (ଜୀବରସାୟନ) ଏମ୍.ଏସ୍‌ସି. (ପ୍ରୟୋଗାତ୍ମକ ପୁଷ୍ଟିବିଜ୍ଞାନ) ଏଫ୍.ଆଇ.ସି.ଏନ୍., ଅବସରପ୍ରାପ୍ତ ସହଯୋଗୀ ଅଧ୍ୟାପକ, ଜୀବରସାୟନ ବିଭାଗ, ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ, କଟକ ।

୧୪. ପ୍ରଫେସର ଡକ୍ଟର ରାଧାନାଥ ରଥ, ଏମ୍.ଏ. (ମନସ୍ତତ୍ତ୍ୱ), ପିଏଚ୍.ଡି., ନେସନାଲ୍ ଫେଲୋ ଆଇ.ସି.ଏସ୍.ଏସ୍.ଆର୍., ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ମନୋବିଜ୍ଞାନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।

୧୫. ଶ୍ରୀ ନିରଞ୍ଜନ ପାତ୍ର, ବି.ଏସ୍.ସି., ବି.ଇଡି., ଡିପ୍-ଇନ୍-କମ୍ପ୍ୟୁଟର ପ୍ରୋଗ୍ରାମିଙ୍ଗ୍, ସହକାରୀ ଶିକ୍ଷକ, ରଘୁନାଥ ଜୀଉ ବିଦ୍ୟାପୀଠ, ଦେଉଳ ସାହି, କଟକ ।

୧୬. ଡକ୍ଟର ଅଭିମନ୍ୟୁ ମିଶ୍ର, ଏମ୍.ଏସ୍‌ସି. (ପଦାର୍ଥବିଜ୍ଞାନ), ପିଏଚ୍.ଡି. ଅବସରପ୍ରାପ୍ତ ପ୍ରାଧ୍ୟାପକ, ପଦାର୍ଥ ବିଜ୍ଞାନ ବିଭାଗ ରାଜେନ୍ଦ୍ର ମହାବିଦ୍ୟାଳୟ, ବଲାଙ୍ଗୀର ।

୧୭. ଡାକ୍ତର ପ୍ରତିଭା ସେନ୍, ଏମ୍.ଡି. (ନିଦାନ ବିଭାଗ) ଅବସରପ୍ରାପ୍ତ ସହକାରୀ ଅଧ୍ୟାପିକା, ନିଦାନ ବିଭାଗ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଚିକିତ୍ସା ମହାବିଦ୍ୟାଳୟ, ବର୍‌ହମପୁର ।

୧୮. ସ୍ୱର୍ଗତ ପ୍ରଫେସର ଡକ୍ଟର ହରିହର ପଟ୍ଟନାୟକ, ଏମ୍.ଏସ୍‌ସି. (ଉଦ୍ଭିଦ ବିଜ୍ଞାନ), ପିଏଚ୍.ଡି., ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ଉଦ୍ଭିଦ ବିଜ୍ଞାନ ବିଭାଗ ଓ ପୂର୍ବତନ କୁଳପତି, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର ।

୧୯. ଡକ୍ଟର ପ୍ରମୋଦ କୁମାର ମହାପାତ୍ର, ଏମ୍.ଏସ୍‌ସି. (ଉଦ୍ଭିଦ ବିଜ୍ଞାନ), ବରିଷ୍ଠ ସହସମ୍ପାଦକ, 'ସମାଜ', କଟକ ।

୨୦. ପ୍ରଫେସର ଡକ୍ଟର ରମେଶ ଚନ୍ଦ୍ର ପରିଡ଼ା, ଏମ୍.ଏସ୍‌ସି. (ରସାୟନ ବିଜ୍ଞାନ), ପିଏଚ୍.ଡି., ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ରସାୟନ ବିଜ୍ଞାନ ବିଭାଗ, ମୌଳିକ ବିଜ୍ଞାନ ଓ କଳା ମହାବିଦ୍ୟାଳୟ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।

୨୧. ଶ୍ରୀ ବିଶ୍ୱନାଥ ନାୟକ, ବି.ଏସ୍‌ସି., ବି.ଇଡି., ଏମ୍.ଏ. (ଇତିହାସ), ଏମ୍.ଏ. (ରାଜନୀତି ବିଜ୍ଞାନ), ଏମ୍.ଇଡି. (ବ୍ରହ୍ମପୁର), ଏମ୍.ଇଡି. (ଉତ୍କଳ),
ଅବସରପ୍ରାପ୍ତ ବିଜ୍ଞାନ ଶିକ୍ଷକ, ରାଧାନାଥ ସେକେଣ୍ଡାରୀ ଟ୍ରେନିଂ ସ୍କୁଲ, କଟକ ।

୨୨. ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ଏମ୍.ଏସ୍‌ସି. (ରସାୟନ ବିଜ୍ଞାନ), ପିଏଚ୍.ଡି., ଏଫ୍.ଆଇ.ସି.,
ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ, ରସାୟନ ବିଜ୍ଞାନ ବିଭାଗ,
ରେଭେନ୍‌ସା କଲେଜ, କଟକ ।

୨୩. ଡକ୍ଟର ଗୌରାଙ୍ଗ ଚନ୍ଦ୍ର ମହାନ୍ତି, ଏମ୍.ଏସ୍‌ସି. (ପଦାର୍ଥ ବିଜ୍ଞାନ) ପିଏଚ୍.ଡି.,
ପ୍ରାଧ୍ୟାପକ, ପଦାର୍ଥ ବିଜ୍ଞାନ ବିଭାଗ, ରେଭେନ୍‌ସା କଲେଜ, କଟକ ।

୨୪. ଡାକ୍ତର ଅରୋ ବିଶ୍ୱବନ୍ଧ୍ୟ, ଏମ୍.ଡି. (ଭେଷଜ)ଡି. ଏମ୍. (ରକ୍ତ ରୋଗ),
ସହଯୋଗୀ ଅଧ୍ୟାପକ, ରକ୍ତରୋଗ ବିଭାଗ,
ଖ୍ରୀଷ୍ଟିଆନ୍ ମେଡିକାଲ୍ କଲେଜ ହସ୍‌ପିଟାଲ୍, ଭେଲ୍ଲୋର୍ ।

୨୫. ଡକ୍ଟର ପ୍ରିୟତମା ଦେଓ, ଏମ୍.ଏସ୍‌ସି. (ପଦାର୍ଥ ବିଜ୍ଞାନ), ପିଏଚ୍.ଡି., ଏମ୍.ଏସ୍.
ଅବସରପ୍ରାପ୍ତ ଅଧ୍ୟକ୍ଷା, ରେଭେନ୍‌ସା କଲେଜ, କଟକ ।

୨୬. ଇଞ୍ଜିନିୟର୍ ମୀରା ବିଶ୍ୱବନ୍ଧ୍ୟା, ବି.ଏସ୍‌ସି. ଇଞ୍ଜିନିୟରିଂ, ଏମ୍. ଇ.,
ଅଧ୍ୟାପିକା, ବିଦ୍ୟୁତ୍ ଇଞ୍ଜିନିୟରିଂ ବିଭାଗ,
କଲେଜ ଅଫ୍ ଇଞ୍ଜିନିୟରିଂ ଆଣ୍ଡ୍ ଟେକ୍ନୋଲୋଜି, ଭୁବନେଶ୍ୱର ।

---

ସନ୍ତାନର ଲାଳନପାଳନ ପିତାମାତାଙ୍କପାଇଁ ଏକ ଆହ୍ୱାନ । ଏଥିରେ ଅନେକ ସମସ୍ୟାର ସମ୍ମୁଖୀନ ହେବାକୁ ପଡୁଥିଲେ ମଧ ସନ୍ତାନର ସାନ୍ନିଧ ମନରେ ଆଣିଦିଏ ଅପାର ଆନନ୍ଦ । କିନ୍ତୁ ସୁସ୍ଥସବଳ ଶିଶୁଟିଏ ଜନ୍ମ ଦେବା ଯେପରି ଏକ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା, ଶିଶୁଟି ଜନ୍ମ ନେଲାପରେ ତା'ର ସର୍ବାଙ୍ଗୀଣ ବିକାଶପାଇଁ ପିତାମାତା ଯଦ୍‌ପରୋନାସ୍ତି ଯତ୍ନଶୀଳ ହେବା ମଧ ସେହିଭଳି ଏକ ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟ । ତେବେ ଶିଶୁ ସନ୍ତାନର ବିଜ୍ଞାନସମ୍ମତ ଯତ୍ନ ହିଁ ତା'ର ଭବିଷ୍ୟତ୍ ଗଠନପାଇଁ ଏକ ମହାର୍ଘ ପୁଞ୍ଜି ।

**'ଶିଶୁର ଯତ୍ନ'** ପୁସ୍ତକଟିରେ ମା'ଗର୍ଭରେ ଭ୍ରୂଣର ସଞ୍ଚାରଠାରୁ ଆରମ୍ଭ କରି କିଶୋର ବୟସ ପର୍ଯ୍ୟନ୍ତ ବିଭିନ୍ନ ଦିଗ ସମ୍ବନ୍ଧରେ ସୂଚନା ପ୍ରଦାନ କରାଯାଇଛି । ଉତ୍କଳୀୟ ସଂସ୍କୃତିକୁ ଦୃଷ୍ଟିରେ ରଖି ଅନେକ ବ୍ୟାବହାରିକ ପରାମର୍ଶ ସମ୍ପର୍କରେ ଉଲ୍ଲେଖ ରହିଛି ଏହି ପୁସ୍ତକରେ ।

ପୁସ୍ତକଟିରେ ଶିଶୁର ସ୍ୱାସ୍ଥ୍ୟ, ଶିକ୍ଷା ଓ ଆଚରଣଗତ ସମସ୍ୟା ଆଦି ବହୁ ବିଷୟରେ ନିର୍ବାଚିତ ପ୍ରବନ୍ଧମାନ ସ୍ଥାନ ପାଇଛି । ପ୍ରବନ୍ଧମାନ ବିଜ୍ଞାନ ପ୍ରଚାର ସମିତି ଆନୁକୂଲ୍ୟରେ ଓଡ଼ିଶାର ଲବ୍ଧପ୍ରତିଷ୍ଠ ଡାକ୍ତର ଏବଂ ଶିକ୍ଷାବିତ୍ ତଥା ମନସ୍ତତ୍ତ୍ୱବିତ୍‌ମାନଙ୍କଦ୍ୱାରା ରଚିତ । ତେଣୁ ପ୍ରତ୍ୟେକ ପିତାମାତା ତଥା ଆସନ୍ତାକାଲିର ପିତାମାତାଙ୍କଦ୍ୱାରା ପୁସ୍ତକଟି ଆଦୃତ ହେବ ବୋଲି ଆଶା ।

ବକ୍‌ମିନ୍‌ଷ୍ଟର୍ ଫୁଲର୍ କହିଥିଲେ, ''ପ୍ରତ୍ୟେକ ଶିଶୁ ହିଁ ଜଣେ ଜଣେ ପ୍ରତିଭାଧର ହୋଇ ଜନ୍ମ ନେଇଥାନ୍ତି ।'' ତେଣୁ ସେମାନଙ୍କୁ ପ୍ରତିଭାରେ ପରିଣତ କରିବା ପ୍ରତ୍ୟେକ ପିତାମାତାଙ୍କର ନୈତିକ ଦାୟିତ୍ୱ । 'ଶିଶୁର ଯତ୍ନ' ପୁସ୍ତକଟି ଏ ଦିଗରେ ସେମାନଙ୍କୁ ଯଥୋଚିତ ଦିଗ୍‌ଦର୍ଶନ ଦେବାରେ ସହାୟକ ହୋଇପାରିବ ।

ISBN 81-7411-299-5




ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨
www.vidyapuri.com